# ଜନନୀ ।

ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ ଏମ୍. ଏ. ବ. ଇଡ

# JANANI

OR

# THE MOTHER.

BY

**Krishna Chandra Sen Gupta,**

**M. A., B. Ed.**

# ଜନନୀ ।

"ମାତା ଧରଣୀ ଜନନୀ ଦୟା ବ୍ରହ୍ମ ଦୟା ସତୀ ।
ଦେବୀ ଭୂ ରମଣୀଶ୍ରେଷ୍ଠା ନିର୍ଦ୍ଦୋଷା ସର୍ବ୍ବଦୁଃଖହା ॥"

ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ ଏମ୍. ଏ. ବି. ଇଡଙ୍କ ପ୍ରଣୀତ ।

ଦ୍ୱିତୀୟ ମୁଦ୍ରଣ ।

**Printed by M. Kar,**

**THE UTKAL SAHITYA PRESS,**

**CUTTACK.**

**1936**

ମୂଲ୍ୟ ୪ ୦ ୧ ଆଠ ଅଣା ।

# ଉତ୍ସର୍ଗପତ୍ର ।

---

ଓଁ ନମୋ ଭଗବତେ ଶ୍ରୀ ରାମକୃଷ୍ଣାୟ ।

ମା,

ତୋର ସ୍ୱାର୍ଥଗନ୍ଧହୀନ ପବିତ୍ର ସ୍ନେହର ସ୍ମୃତିଦ୍ୱାରା ଅନୁପ୍ରାଣିତ ହୋଇ ଲେଖନୀ ଧାରଣ କରୁଅଛି । ଆଜ ତୁ ସ୍ୱର୍ଗରାଜ୍ୟରୁ ଏହା ପ୍ରତି ଶୁଭଦୃଷ୍ଟି ପକାଇଲେ ପୁସ୍ତକ ପ୍ରଣୟନର ଉଦ୍ଦେଶ୍ୟ ସଫଳ ହେବ । ଏହି ପୁସ୍ତକ ପାଠକରି ଅନ୍ତତଃ ଜଣେ ଦୁଇଜଣ ମାତୃଭକ୍ତ ହେଉନ୍ତୁ ଏହି ଆଶୀର୍ବାଦ ଭିକ୍ଷାକରି ତୋର ପ୍ରଧାହିକ୍ତ ନାମରେ ଏହା ଉତ୍ସର୍ଗ କଲି ।

କଟକ }
୯।୧୧।୬୨ }

ତୋର ସ୍ନେହପାଳିତ ପୁତ୍ର
କୃଷ୍ଣଚନ୍ଦ୍ର ।

# ସୂଚୀପତ୍ର

# ଜନନୀ

## ପ୍ରଥମ ଅଧ୍ୟାୟ

### ଜନନୀ ଜନ୍ମଭୂମି ଓ ସ୍ୱର୍ଗ

"ଜନନୀ, ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ"

"A mother is a mother still
The holiest thing alive."
—The Three Graves.

ମନୁଷ୍ୟର ବୁଦ୍ଧି ହେବାମାତ୍ରକେ ସେ ସ୍ୱର୍ଗକୁ ଗୋଟିଏ ସକଳପ୍ରକାର ସୁଖପୂର୍ଣ୍ଣ ସ୍ଥାନ ବୋଲି ମନେ କରେ । ବିଶେଷତଃ ଏହି ଦୁଃଖପୂର୍ଣ୍ଣ ସଂସାରରେ ରହି ମାନବ ମଧ୍ୟେ ମଧ୍ୟେ ଗୋଟିଏ ନିରବଚ୍ଛିନ୍ନ ସୁଖମୟ ସ୍ଥାନର କଳ୍ପନାରେ ମଧ୍ୟ ସୁଖାନୁଭବ କରେ । ସେହି ସ୍ଥାନହିଁ ତାହା ପକ୍ଷରେ ସ୍ୱର୍ଗ । ମହାଜନ କହିଗଲେ, ଏହିପରି ଦୁଃଖଶୂନ୍ୟ ସୁଖର ଆଗାର ସ୍ୱର୍ଗ ମଧ୍ୟ ଜନନୀ ଓ ଜନ୍ମଭୂମିଙ୍କ ତୁଳନାରେ ତୁଚ୍ଛ ବସ୍ତୁ । କାରଣ ଆଉ ଯାହା ହେଉ, ସ୍ଥୂଳରେ ମାନବ ମାତୃଗର୍ଭରୁ ଜନ୍ମ ଲାଭ କରି, କଳ୍ପନାଶକ୍ତି ଜନ୍ମିବାଯାକେ ଜନ୍ମଭୂମିରେ ପୁଷ୍ଟ ନ ହେଲେ,ସ୍ୱର୍ଗ ବୋଲି ଗୋଟିଏ ସ୍ଥାନର କଳ୍ପନା ମଧ୍ୟ କରି ପାରେ ନାହିଁ । ଏଥିନିମିତ୍ତ ଜନନୀ ଓ ଜନ୍ମଭୂମିଙ୍କୁ ଉଚ୍ଚତର ସ୍ଥାନ ପ୍ରଦତ୍ତ ହୋଇଅଛି । ପୁଣି ଜନନୀ ଶବ୍ଦଟି ପ୍ରଥମରେ ରଖିବାର ଯେ କୌଣସି କାରଣ ଥାଉ, ଏହା ମଧ୍ୟ ଗୋଟିଏ କାରଣ ଯେ, ଜନନୀ ଜନ୍ମଭୂମିଠାରୁ ଗରୀୟସୀ । ଏଠାରେ ମଧ୍ୟ ପୂର୍ବୋକ୍ତ କାରଣ ପ୍ରଯୋଜ୍ୟ । କାରଣ ଜନନୀ

ଗର୍ଭରୁ ଜାତ ନ ହେଲେ ମାନବ ଜନ୍ମଭୂମିର ମୁଖଦର୍ଶନ କରିବ କିପରି ? ଅତଏବ ଜନ୍ମଭୂମି ଓ ସ୍ୱର୍ଗଠାରୁ ଜନନୀଙ୍କର ଆଦର ଅଧିକ ।

ଏ ପୃଥିବୀରେ ଜନନୀ ନାହିଁ କାହାର ? ପଶୁ, ପକ୍ଷୀ, କୀଟ, ପତଙ୍ଗ, ତରୁ, ଲତା ଓ ମାନବ ସମସ୍ତେ ଜନ୍ମଗ୍ରହଣ କରନ୍ତି; ସୁତରାଂ ସମସ୍ତଙ୍କର ଜନନୀ ଅଛନ୍ତି । ଚେତନ ବସ୍ତୁ ଛାଡ଼ି ଜଡ଼ବସ୍ତୁମାନଙ୍କର ମଧ୍ୟକାର୍ଯ୍ୟକାରଣ-ସୂତ୍ରରେ ଜନନୀ ଅଛି ବୋଲି କହିବାକୁ ହୁଏ । କାଠରେ ଅଗ୍ନି ସଂଯୁକ୍ତ ହେଲେ ଭସ୍ମ ଉତ୍ପନ୍ନ ହୁଏ, ଏହି ଭସ୍ମର ଜନନୀ କାଷ୍ଠ ଓ ଜନକ ଅଗ୍ନି । ସୁତରାଂ ଜନନୀ ନ ଥାଇ ଜନ୍ମ, ଶିର ନ ଥାଇ ଶିରୋବେଦନାପରି; ସେଥିପାଇଁ ଭକ୍ତ ସେହି ଜଗଜ୍ଜନନୀଙ୍କର ସ୍ତବ କରିବାକୁ ଯାଇ କହିଅଛନ୍ତି :—

> "ଯା ଦେବୀ ସର୍ବଭୂତେଷୁ ମାତୃରୂପେଣ ସଂସ୍ଥିତା ।
> ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ॥"

ଏହିଠାରେ ଗୋଟିଏ ନୂତନ କଥାର ଆଲୋଚନା କରିବାକୁ ହେବ । ଆମ୍ଭେମାନେ କହିଅଛୁଁ ସମସ୍ତଙ୍କର ଜନନୀ ଅଛନ୍ତି । ଭକ୍ତ କହୁଅଛନ୍ତି ଯେ ଜଗତ୍‌ପାଳୟିତ୍ରୀ ଜଗଜ୍ଜନନୀ ଦେବୀ ସମସ୍ତ ଜୀବମଧ୍ୟରେ ମାତୃରୂପରେ ବିରାଜିତା । କଥାଟି ସମ୍ପୂର୍ଣ୍ଣ ସତ୍ୟ । ତାହା ନ ହେଲେ ଅର୍ଥାତ୍ ଦେବୀଙ୍କର ପୂର୍ଣ୍ଣ ବା ଆଂଶିକ ସମାବେଶ ନ ହେଲେ ମାତୃହୃଦୟରେ ସେ ଦେବଦୁର୍ଲ୍ଲଭ ସନ୍ତାନ-ବାତ୍ସଲ୍ୟ ଆସନ୍ତା କେଉଁଠାରୁ ? ସମୟ ସମୟରେ ମନେ ହୁଏ, ସେହି ଦୟାମୟୀ ଜଗଜ୍ଜନନୀ ସ୍ୱକୀୟ ସ୍ନେହଭଣ୍ଡାରର ଏକ ଏକ କଣା ପ୍ରତ୍ୟେକ ଜନନୀଙ୍କୁ ପ୍ରଦାନ କରିଅଛନ୍ତି । ନୋହିଲେ ସ୍ୱାର୍ଥାନ୍ଧ, ସ୍ୱାର୍ଥପର ମୋହମୁଗ୍ଧ ମାନବ ମାତୃରୂପେ ଏତେ ଦୟା, ସ୍ନେହ ଓ ନିଃସ୍ୱାର୍ଥଭାବ ଖେଳ ଖେଳନ୍ତା କାହିଁ ? ମା ନାମରେ ଏତେ ମାଧୁର୍ଯ୍ୟ ଆସନ୍ତା କେଉଁଠାରୁ ? ମା ବୋଲି ଡାକି ମାନବ ଯନ୍ତ୍ରଣା-ଜଞ୍ଜାଳରେ ଏତେ ଶାନ୍ତି ଅନୁଭବ କରନ୍ତା କିପରି ? ବାସ୍ତବିକ ମାତା ଜଗଜ୍ଜନନୀଙ୍କର ଗୋଟିଏ

ଅତି ଉତ୍କୃଷ୍ଟ ଓ ସୁନ୍ଦର ଆଦର୍ଶ । ଏହି ଜନନୀରୂପ ସୋପାନ ନ ଥିଲେ ଜଗଜ୍ଜନନୀଙ୍କର ଧାରଣା ମାନବ ପକ୍ଷରେ ସମ୍ଭବ ହୁଅନ୍ତା କି ନାହିଁ କିଏ ଜାଣେ ? କଲେକ୍ଟର୍, କମିଶନରଙ୍କ ଶକ୍ତି ଦେଖି ଯେପରି ଅନେକଙ୍କ ମନରେ ରାଜାଧିରାଜ ସମ୍ରାଟଙ୍କର ଶକ୍ତିର ଗୋଟାଏ ଧାରଣା ହୁଏ, ସେହିପରି ଜନନୀଙ୍କର ସ୍ନେହ ସମ୍ଭୋଗଦ୍ୱାରା ଜଗଜ୍ଜନନୀଙ୍କ ସ୍ନେହର ଟିକିଏ ଆଭାସ ମିଳେ । ସୁତରାଂ ଜନନୀ ଯେ ଜନ୍ମଭୂମିଠାରୁ ଗରୀୟସୀ ଏଥିରେ ଅଦୌ ସନ୍ଦେହ ନାହିଁ । ଯେ ଜନ୍ମଭୂମିର ସେବାରେ ବ୍ରତୀ ହେବା ଆଗରୁ ଜନନୀଙ୍କ ସେବାରେ ମନଃପ୍ରାଣ ଢାଳି ଦେଇ ପାରିନାହାନ୍ତି, ତାହାଙ୍କ ପକ୍ଷରେ ଜନ୍ମଭୂମିର ସେବା ଲୋକ-ପ୍ରତାରଣାର ଗୋଟିଏ ବାହ୍ୟ ଆବରଣ ମାତ୍ର । ଜନନୀ ସମସ୍ତ ସ୍ନେହର କେନ୍ଦ୍ର । ଜନନୀଙ୍କୁ କେନ୍ଦ୍ର କରି ଜନ୍ମଭୂମିକୁ ବ୍ୟାସାର୍ଦ୍ଧ ନେଇ ଯେ ପରହିତ-ବୃତ୍ତ ଅଙ୍କନ କରିପାରେ ତାହାର ବୃତ୍ତଟି ସୁନ୍ଦର ହୁଏ; ନତୁବା ବୃତ୍ତଟି ବଙ୍କାତଙ୍କା ହୋଇ ଯାଉଥାଏ ଏବଂ ତାହାକୁ ବାରମ୍ବାର ପୋଛି ନୂତନ ବୃତ୍ତାଙ୍କନ କରିବାର କଷ୍ଟ ସ୍ୱୀକାର କରିବାକୁ ପଡ଼େ । ଯେଉଁ ହତଭାଗ୍ୟ ଲୋକ ଜନନୀମୁଖଦର୍ଶନରୁ ବଞ୍ଚିତ ହୋଇଅଛି, ଜୀବନର ଧ୍ରୁବତାରା କେଉଁ ଦିଗରେ ସେ ତାହା ସହଜରେ ନିରୂପଣ କରି ପାରେ ନାହିଁ । ଯେ ପିତୃହୀନ ହୋଇ ମାତାର କୋଡ଼ରେ ସ୍ଥାନ ପାଏ, ତାହାର ଜୀବନ ସପ୍ତମୀ ତିଥିର ଶଶିବତ୍; କିନ୍ତୁ ଯେ ମାତୃହୀନ ହୋଇ ପିତାଙ୍କ କୋଳରେ ସ୍ଥାନ ପାଏ, ତାହାର ଜୀବନ କୃଷ୍ଣପକ୍ଷର ଚତୁର୍ଦ୍ଦଶୀବତ୍ ।

## ଦ୍ୱିତୀୟ ଅଧ୍ୟାୟ

### ଜନନୀ ଓ ଅନ୍ୟ ଆତ୍ମୀୟ ବର୍ଗ

"If the world were put into one scale and my mother into the other, the world would kick the beam"—Lord Langdale.

ଅମ୍ଭେମାନେ ପୂର୍ବ ଅଧ୍ୟାୟରେ କହିଅଛୁଁ ଯେ ପିତୃ-ହୀନ ବ୍ୟକ୍ତିର ଜୀବନ ଅର୍ଦ୍ଧାନ୍ଧକାରମୟ ଓ ଅର୍ଦ୍ଧତମସାଚ୍ଛନ୍ନ, କିନ୍ତୁ ମାତୃହୀନ ସନ୍ତାନର ଜୀବନ ପ୍ରାୟ ଅନ୍ଧକାରମୟ କହିଲେ ଚଳେ । ବାସ୍ତବିକ ଦେଖିବାକୁ ଗଲେ ମଉସା, ମାଉସୀ, ପିଉସା, ପିଉସୀ, ଭାଇ, ଭଉଣୀ, ମାମୁ, ମାଇଁ, କକେଇ, ଖୁଡ଼ୀ, ଜେଠା, ଜେଠେଇ, ଶାଶୁ, ଶ୍ୱଶୁର, ସ୍ତ୍ରୀ ପ୍ରଭୃତି ପ୍ରତ୍ୟେକ ଆତ୍ମୀୟଙ୍କ ହୃଦୟରେ ତୁମ୍ଭପାଇଁ ସ୍ନେହ ଯେ ନାହିଁ ତାହା ନୁହେ, କିନ୍ତୁ ଜନନୀସ୍ନେହ ତୁଳନାରେ ସମସ୍ତ ନିଷ୍ପ୍ରଭ ବୋଧ ହୁଏ । ଦେଖାଯାଏ, ପୂଜନୀୟ ପିତା ପୁତ୍ରର ଗୁଣାକାଙ୍କ୍ଷା କରନ୍ତି । ପୁତ୍ର ଗୁଣୀ ନ ହେଲେ ପିତାଙ୍କର ସେତେଦୂର ସ୍ନେହ ପାଏ ନାହିଁ । ପୁତ୍ର ଗୁଣୀ ହେବ, ପିତାଙ୍କର ଯଶୋବୃଦ୍ଧି କରିବ, ଗୃହର ସମ୍ମାନ ବା ଠେକ ରଖିବ, ଇତ୍ୟାଦି ଇତ୍ୟାଦି ବାସନା ପିତୃହୃଦୟକୁ ଅଧିକାର କରିଥାଏ । ମନୁ ଏଥିପାଇଁ କହିଅଛନ୍ତି, "ସହସ୍ର ପିତାଙ୍କଠାରୁ ଏକ ମାତା ପୂଜନୀୟା ।" ଅବଶ୍ୟ ପୁତ୍ରସ୍ନେହ ଯେ ପିତାଙ୍କଠାରେ ଅଳ୍ପ ତାହା ନୁହେ । ତେବେ ମାତାଙ୍କର ପୁତ୍ରସ୍ନେହ ଯେପରି ନବନୀତ ପ୍ରାୟ, ପିତାଙ୍କର ପୁତ୍ରସ୍ନେହ ସେପରି ନୁହେ; ତାହା [illegible] ଭିତର ସ୍ନିଗ୍ଧ, କିନ୍ତୁ ବାହାର ଶକ୍ତ । ମାତାଙ୍କ ସ୍ନେହର ଭିତର ବାହାର ସମସ୍ତ ସ୍ନିଗ୍ଧ । [illegible] କହିଦିଏ ଯେ ସମ୍ବନ୍ଧ ଥିବାଯାକେ ସ୍ତ୍ରୀପରି ପ୍ରଣୟିନୀ ଦେଖାଯାନ୍ତି ନାହିଁ । କେହି କେହି ସେହି ପ୍ରଣୟିନୀଙ୍କ ପ୍ରଣୟ-ମୋହରେ ପଡ଼ି ପରମପୂଜନୀୟା ମାତାଙ୍କ ପ୍ରତି କୁବ୍ୟବହାର କରିଥାନ୍ତି । ବଙ୍ଗଳାରେ ଗୋଟିଏ କଥା ଅଛି, "ମାଠେଯେ ଯେ ଭାଲବାସେ ତାରେ ବଲେ ଡାଇନ୍" ଅର୍ଥାତ୍ ମାଠାରୁ ଯେ

ବେଶୀ ଭଲ ପାଏ, ତାହାକୁ ଡାଆଣୀ ବୋଲି ଜାଣିବାକୁ ହେବ । ସମୟ ସମୟରେ କୌଣସି କୌଣସି ସ୍ତ୍ରୀ ସେହି ଡାଆଣୀରୂପ ଧାରଣ କରନ୍ତି । ପ୍ରକୃତରେ ମନୁଷ୍ୟକୁ ଡାଆଣୀ ନ ଲାଗିଲେ ସେ ମା'ପର ବସ୍ତୁକୁ ଅନାଦର କରିବ କପରି ? ଅଧିକାଂଶ ସ୍ଥଳରେ ଏହି ପ୍ରଣୟିନୀ ଆସି ସ୍ୱାମୀର ସମସ୍ତ ଧନ, ଯୌବନ ଇତ୍ୟାଦି ଉପରେ ଏକାଧୀଶ୍ୱରୀ ହେବେ ବୋଲି ଘରକୁ ଭାଗ ଦେଇ ସ୍ୱାମୀଙ୍କୁ ତାଙ୍କର ପିତା, ମାତା, ଭାଇ, ବନ୍ଧୁଙ୍କଠାରୁ ପୃଥକ୍ କରି ବଡ଼ ଆନନ୍ଦ ଅନୁଭବ କରନ୍ତି; ସ୍ୱାମୀ ମଧ୍ୟ ମେଷବତ୍ ଗୃହଗତ ହୋଇ ନାରୀଙ୍କ ମୁଖ ଦୁନିଅରେ ଦେଖାଇବାରେ ଅଦୌ ସଙ୍କୋଚ ବୋଧ କରନ୍ତି ନାହିଁ । ଏହାକୁ ଡାଆଣୀ ଲାଗିବା ନ କହି କଅଣ କୁହାଯିବ ? ସର୍ବତ୍ର ଯେ ସ୍ତ୍ରୀଜାତି ଏହିପରି ତାହା ଆମ୍ଭେମାନେ କହୁ ନାହୁଁ । କିନ୍ତୁ ଅଧିକାଂଶ ସ୍ଥଳରେ ଏହି ଅଭିନୟ—ଏହାଠାରୁ ଅଧିକ ଭୀଷଣ ଅଭିନୟ ଦେଖାଯାଏ । ସେ ଅଭିନୟ ଦେଖି ପ୍ରଶସ୍ତ ହୃଦୟ ସହ୍ୟ କରି ନ ପାରି ଚିତ୍କାର କରି ଉଠେ :—

"ଉପକାରିଣି ବିଶ୍ରବ୍ଧେ ଶୁଦ୍ଧମତୌ ଯଃ ସମାଚରତି ପାପମ୍ ।
ତମ୍ ଜନମସତ୍ୟସନ୍ଧଂ ଭଗବତି ବସୁଧେ କଥଂ ବହସି ?"

ଯେଉଁ ସ୍ତ୍ରୀ ନିଜର ଶାଶୁ ଶ୍ୱଶୁରଙ୍କ ସେବା ସହାୟେ ସ୍ୱାମୀଙ୍କୁ ପ୍ରବର୍ତ୍ତନା ଦିଅନ୍ତି, ସେ ଲକ୍ଷ୍ମୀ; କିନ୍ତୁ ଯେଉଁ ସ୍ତ୍ରୀ ତାହାର ବିପରୀତାଚରଣ କରନ୍ତି ସେ ଅକ୍ଷରେ ଅକ୍ଷରେ ଅଲକ୍ଷଣୀ । ପୁଣି କେତେକ ସ୍ଥଳରେ ସ୍ତ୍ରୀର ଦୋଷ ନ ଥାଏ । ପୁରୁଷ ଆପଣାର ସ୍ତ୍ରୀ ଓ ପୁତ୍ରମୁଖ ଦେଖି ଏପରି ମୋହାନ୍ଧ ହୁଏ ଯେ ପିତାମାତାଙ୍କ ସେବା କଥା ସ୍ୱପ୍ନରେ ସୁଦ୍ଧା [illegible]— ଭାବିବା ଦୂରେ ଥାଉ, ସେମାନଙ୍କ ପ୍ରତି ନିର୍ମମ ଅତ୍ୟାଚାର ଆରମ୍ଭ କରେ । ଯେଉଁଠାରେ ପୁରୁଷର ପୁରୁଷତ୍ୱ ଥାଏ ସେଠାରେ ସୁଦକ୍ଷ ଅଶ୍ୱଚାଳକ ଦୁଷ୍ଟ ଅଶ୍ୱକୁ ଶାସନ କରିବାପରି ସୁପୁରୁଷ ଆପଣାର ଦୁଷ୍ଟା ପତ୍ନୀକୁ ଶାସନଶୃଙ୍ଖଳରେ ବାନ୍ଧି ସୁପଥରେ ଚାଳନ କରିବା ଦେଖାଯାଏ ।

ସବୁବେଳେ ମୂଳକୁ ଯେ ଚାହେଁ, ସେହି ଏକା ଧୀମାନ୍ । ସମସ୍ତଙ୍କର ଏ କଥା ଭାବିବା ଆବଶ୍ୟକ ଯେ, ମୁଁ ଯେ ଏପରି ସ୍ୱଜନ କାମିନୀ,

କମନୀୟ ପୁତ୍ରମୁଖ, ଅମିତ ଐଶ୍ୱର୍ଯ୍ୟ ପ୍ରଭୃତିର ଅଧିକାରୀ ହୋଇଅଛ, ଏହା ମୂଳରେ କିଏ ?—ମୁଁ କାହା ଯୋଗୁଁ ଏ ସବୁ ଦେଖିଲି ? ମୋର ସ୍ତ୍ରୀ, ପୁତ୍ର, ଭାଇ, ବନ୍ଧୁ ଇତ୍ୟାଦି ସର୍ବାଦୌ ବରଣୀୟ, ନା ମୋର ମାତା ସର୍ବାଗ୍ରେ ବରଣୀୟା ? ଯେ ମାତାଙ୍କୁ ହତାଦର କରି ଏମାନଙ୍କର ଆଦର କରିବାକୁ ଯାଏ, ସେ ବୃକ୍ଷର ମୂଳରେ ଜଳସେଚନ ନ କରି ପତ୍ରମାନଙ୍କରେ ଜଳସେଚନରୂପ କାର୍ଯ୍ୟ କରେ । ଭ୍ରମ ଆଶ୍ରୟ କଲେ ଲୋକ କର୍ତ୍ତବ୍ୟ ନିର୍ଣ୍ଣୟ କରି ପାରେ ନାହିଁ, ମାତାଙ୍କୁ ଯେ ଅବହେଳା କରେ, ତାହାକୁ କୃତଘ୍ନ ଛଡ଼ା ଆଉ କଣ କହିବା ? ଏଠାରେ ଭାଇ, ଭଉଣୀ, ଖୁଡ଼ୁତା, ଖୁଡ଼ୀ, ଜେଠା, ଜେଠେଇ, ସ୍ତ୍ରୀ, ପୁତ୍ରାଦି—ସମ୍ବନ୍ଧପ୍ରତି ଅବହେଳା ବା ଉଦାସୀନତା ଦେଖାଇବା ଯେ ଗୋଟାଏ ଉତ୍ତମ କାର୍ଯ୍ୟ, ତାହା ବୁଝାଯାଉ ନାହିଁ । ଯେ ଯେ ଭଳି ସ୍ନେହ, ସମ୍ମାନ ଓ ପୂଜାର ପାତ୍ର ବୁଦ୍ଧିମାନ୍ ବ୍ୟକ୍ତି ତାହାଙ୍କ ପ୍ରତି ସେହିପରି ସ୍ନେହ, ସମ୍ମାନ ଓ ପୂଜା ଅର୍ପଣ କରିଥାନ୍ତି । ଏଠାରେ ଏତିକି କହିବା ଆମ୍ଭମାନଙ୍କର ଅଭିପ୍ରାୟ ଯେ ଜନନୀ ଯେତେବେଳେ ପୃଥିବୀରେ ପୁତ୍ରର ସର୍ବଶ୍ରେଷ୍ଠ ଆରାଧ୍ୟ ଦେବତା ସେତେବେଳେ କି ସାହସରେ ସେ ତାଙ୍କର ଅବମାନନା କରି ପାରେ ?

ମାତୃସ୍ନେହ କେଡ଼େ ନିଃସ୍ୱାର୍ଥ ? ସମସ୍ତ ପୁତ୍ର କନ୍ୟାଙ୍କ ପ୍ରତି ମାତାଙ୍କର ସ୍ନେହ ସମାନ । ନିଃସ୍ୱାର୍ଥ ପ୍ରୀତିର ଲକ୍ଷଣ ଏହି ଯେ, ଯେଉଁମାନେ ତାହା ଅନୁଭବ କରନ୍ତି, ସେମାନେ ଆପଣାକୁ ସର୍ବଶ୍ରେଷ୍ଠ ପ୍ରୀତିଭାଜନ ବୋଲି ମନେ କରନ୍ତି । ଯେପରି ମାତାର ପ୍ରତ୍ୟେକ ପୁତ୍ର ମନେ କରନ୍ତି—ମୋ ମା ମୋତେ ସମସ୍ତଙ୍କଠାରୁ ବେଶୀ ଭଲପାଏ—ପ୍ରକୃତରେ ତାଙ୍କର ସ୍ନେହରେ ନ୍ୟୂନତା ବା ଆଧିକ୍ୟ ନାହିଁ—ତାହା ସମସ୍ତ ପୁତ୍ର କନ୍ୟାଙ୍କ ପ୍ରତି ସମାନ । Victor Hugo ଏହି ମର୍ମରେ ଯଥାର୍ଥ କହିଅଛନ୍ତି,

"Oh, the love of a mother, love no one forgets; miraculous bread which God distributes and multiplies; board always spread by the paternal hearth, whereas each has his portion, and all have it entire."

ସ୍ତ୍ରୀ, ପୁତ୍ର, ଭାଇ, ବନ୍ଧୁ ପ୍ରଭୃତି ସମସ୍ତେ ସୁଖର ସାଥୀ । ରୂପ, ଗୁଣ, ଧନ, ଯୌବନ ଥିବାଯାଏ ସମସ୍ତେ ମଧୁମକ୍ଷିକା ପରି ପାଖରେ ଗୁଣ୍ ଗୁଣ୍ ହେଉଥାନ୍ତି; କିନ୍ତୁ ସେ ସମସ୍ତ ଅଭାବରେ ଜନନୀ ବ୍ୟତୀତ ଦୁଃଖ ଜର୍ଜ୍ଜରିତ ମୁଖ ଦେଖିବାକୁ ଆଉ କାହାର ମନ ବଳେ ନାହିଁ । ଆମ୍ଭେମାନେ ଏପରି ଗୋଟିଏ ଦୃଷ୍ଟାନ୍ତ ଜାଣୁ । ଜନୈକ ବ୍ୟବହାରଜୀବୀ ବ୍ରାହ୍ମଣ ପକ୍ଷାଘାତ ରୋଗଗ୍ରସ୍ତ ହେଲେ । ଦେଖୁଁ ଦେଖୁଁ ତାଙ୍କର ସହଚରୀ ଅର୍ଦ୍ଧାଙ୍ଗିନୀ ନିର୍ମ୍ମମଭାବରେ ତାହାଙ୍କୁ ବିସର୍ଜ୍ଜନ କରି ପିତ୍ରାଳୟରେ ସୁଖରେ କାଳାତିପାତ କଲେ । ପୁତ୍ରକନ୍ୟାମାନେ ସମସ୍ତେ ମାତାଙ୍କ ନିକଟରେ ମାତୁଳାଳୟରେ ବାସ କଲେ । ଦାସଦାସୀ ଧୀରେ ଧୀରେ ବିଦାୟ ଗ୍ରହଣ କଲେ । ବନ୍ଧୁବାନ୍ଧବମାନେ କିଛିଦିନ ସାହାଯ୍ୟାଦି କରି ଥକିପଡ଼ିଲେ । ଶେଷକୁ ରହିଲେ ସେହି—ଯେ ଓକିଲ ବାବୁ କଚେରୀରୁ ଆସିବାମାତ୍ରକେ ଅଣ୍ଟାକୁ ନ ଚାହିଁ ସରସ ବା ବିରସ ମୁଖ ଦେଖି ହର୍ଷ ବା ବିଷାଦ ଅନୁଭବ କରୁଥିଲେ; ଯେ ବାବୁଙ୍କ ଅନୁପସ୍ଥିତିରେ ଆପଣାର ଭବିଷ୍ୟତ୍ ସୁଖ କଳ୍ପନାରେ ଦିନ ଯାପନ ନ କରି ତାଙ୍କର ମଙ୍ଗଳାକାଙ୍କ୍ଷାରେ ଦିନାତିପାତ କରୁଥିଲେ ଏବଂ ଅମଙ୍ଗଳା-ଶଙ୍କାରେ ନିରନ୍ତର ଚିନ୍ତାକୁଳ ରହୁଥିଲେ; ସେହି ଜନନୀ—ସେହି ମା ଆଜି ଓକିଲଙ୍କ ମା ନୁହନ୍ତି । ସେ ଭିକ୍ଷାବ୍ରତଧାରିଣୀ ହୋଇ ଦରିଦ୍ର ପୁତ୍ର ମୁଖରେ ଅନ୍ନଦାନ କରୁଅଛନ୍ତି ଏବଂ ଦାସ ଦାସୀ ଇତ୍ୟାଦି ସମସ୍ତଙ୍କ କାର୍ଯ୍ୟ ଅଟଳ ଏବଂ ସ୍ନେହମୟ ଚିତ୍ତରେ ଏକାକୀ ସମ୍ପାଦନ କରୁଅଛନ୍ତି । ବାବୁଙ୍କର ସେ ପ୍ରେମପୂର୍ଣ୍ଣ ଯୌବନ ନାହିଁ, ସୁତରାଂ ସେ ପ୍ରଣୟୀ ବା ପ୍ରଣୟିନୀ ନାହାନ୍ତି—ବନମଧ୍ୟସ୍ଥ ଶୁଷ୍କ ବୃକ୍ଷକୁ ବିହଙ୍ଗମକୁଳ ପରିତ୍ୟାଗ କଲା ପ୍ରାୟ ସମସ୍ତେ ଓକିଲ ବାବୁଙ୍କୁ ଆଜି ପରିତ୍ୟାଗ କରି କିଏ କୁଆଡ଼େ ଚାଲି ଗଲେଣି—ରହିଅଛନ୍ତି ଏକା ସୁଖ ଦୁଃଖର ସାଥୀ ଜନନୀ । କବି ହୁଲମସ୍ ଯଥାର୍ଥ କହି ଅଛନ୍ତି :—

"Youth fades; love drops; the leaves of
friendship fall;
A mother's secret hope outlives them all."

ଏପରି ଦୃଷ୍ଟାନ୍ତ ବିରଳ ନୁହେ, କିନ୍ତୁ ମନୁଷ୍ୟ ଦେଖି ସୁଦ୍ଧା ଦେଖେ ନାହିଁ, ଶୁଣି ମଧ୍ୟ ଶୁଣେ ନାହିଁ, ବୁଝିମଧ୍ୟ ବୁଝେ ନାହିଁ । ଧନ୍ୟରେ ମାନବପ୍ରକୃତି ! ନୋହିଲେ ମାନବ ଏତେ ବିଡ଼ମ୍ବନା ଭୋଗ କରନ୍ତା କାହିଁକି ?

କୌଣସି କୌଣସିଠାରେ ଦେଖାଯାଏ ଯେ, ପୁତ୍ର ମାତୃଭକ୍ତିର ପରାକାଷ୍ଠା ଦେଖାଇବାକୁ ଯାଇ ଅନ୍ୟାନ୍ୟ ସମ୍ବନ୍ଧପ୍ରତି ଏକାବେଳକେ ଅନାସ୍ଥାପର ହୋଇଥାନ୍ତି । ଏପରି ସ୍ଥଳରେ ପୁତ୍ରର ମାତୃଭକ୍ତିର ଯାଥାର୍ଥ୍ୟରେ ସନ୍ଦେହ ହୁଏ । ମାତୃଭକ୍ତି ଯଥାର୍ଥ ହେଲେ ହୃଦୟ ପବିତ୍ର ଓ ନିର୍ମଳ ହୁଏ । ସୁତରାଂ ପବିତ୍ର ଓ ନିର୍ମଳ ହୃଦୟ ଦ୍ୱାରା ପକ୍ଷପାତିତା ଅସମ୍ଭବ—ଅନ୍ୟାଯ୍ୟ ଅସମ୍ଭବ । ଅତଏବ ଯଥାର୍ଥ ମାତୃଭକ୍ତ ବ୍ୟକ୍ତି ଅପରାପର ସମ୍ବନ୍ଧପ୍ରତି ଯଥା-ଯଥ ବ୍ୟବହାର କରିଥାନ୍ତି । ପୁଣି କୌଣସି କୌଣସିଠାରେ ଦେଖାଯାଏ, ମାତା ନିଜପ୍ରତି ସନ୍ତାନର ସମସ୍ତ ମନୋଯୋଗ ଦାବୀ କରି ବସନ୍ତି । ତାଙ୍କର ଇଚ୍ଛା ଯେ, ମୋର ପୁତ୍ର ତାହାର ଅନ୍ୟାନ୍ୟ ସମସ୍ତ ସ୍ନେହ-ସମ୍ବନ୍ଧ ପରିତ୍ୟାଗ କରି କେବଳ ମୋର ସୁଖସ୍ୱାଚ୍ଛନ୍ଦ୍ୟପ୍ରତି ଯତ୍ନବାନ୍ ହେଉ । ଏପରି ଦୁର୍ବୁଦ୍ଧି-ଗ୍ରସ୍ତ ଏକଦେଶଦର୍ଶିନୀ ମାତାଙ୍କ ସଂଖ୍ୟା ପୃଥିବୀରେ ଅତି ଅଳ୍ପ ହେଲେ ମଧ୍ୟ ତାହାର ଅଭାବ ନାହିଁ । ସୁତରାଂ ଏପରି ସ୍ଥଳରେ ପୁତ୍ର ମାତାଙ୍କ ପ୍ରତି ଅଟଳମନରେ ଅପଣାର କର୍ତ୍ତବ୍ୟ ପାଳନ କରିବା ସଙ୍ଗେ ସଙ୍ଗେ ଅନ୍ୟ ମାନଙ୍କ ପ୍ରତି ମଧ୍ୟ କର୍ତ୍ତବ୍ୟ ସମ୍ପାଦନ କରିବ । ମାତା କ୍ରୁଦ୍ଧ ହେଲେ ମଧ୍ୟ ସତ୍‌କାର୍ଯ୍ୟର ପରିଣାମ ମଧୁମୟ । ଦିନେ ହେଲେ ସେହି ମାତା ଅନୁଭବ କରି ପାରିବେ ଯେ ମୋର ପୁତ୍ର ତାହାର କର୍ତ୍ତବ୍ୟ ପାଳନ କରିବାକୁ ଯାଇ ମୋତେ ବିରକ୍ତ କରିଥିଲା, ଦୋଷ ତାହାର ନୁହେ—ଦୋଷ ମୋର । ଏ ସଂସାର ରଙ୍ଗଶାଳା । ଏଠାରେ ସକଳପ୍ରକାର ପିତାମାତା, ସ୍ତ୍ରୀପୁତ୍ର ପ୍ରଭୃତି ଦେଖାଯାନ୍ତି । ସୁତରାଂ ଯଥାସାଧ୍ୟ ଚତୁର୍ଦ୍ଦିଗରୁ ଆଲୋଚନା କରି କର୍ତ୍ତବ୍ୟନିର୍ଣ୍ଣୟ କରିବାକୁ ହୁଏ ।

କୌଣସି କୌଣସି ପୁତ୍ରଙ୍କ ମୁଖରୁ ଶୁଣାଯାଏ, "କ'ଣ କରିବି ? ମୋର ସ୍ତ୍ରୀ, ପୁତ୍ର, କନ୍ୟାଙ୍କର ଭରଣ ପୋଷଣ ମୋ ପକ୍ଷରେ କଷ୍ଟକର । ସେଥିପାଇଁ ମା'ଙ୍କ କଥା ବୁଝି ପାରେ ନାହିଁ ।" ଏ କଥା ଶୁଣି ମନେ ହୁଏ, ସତେ ଯେପରି ପୁତ୍ର, କନ୍ୟା ଇତ୍ୟାଦି ଅନାଦିକାଳରୁ ଆପଣାର ଏବଂ ଜନ୍ମଦାୟିନୀ ମାତା ପର ! ଯେଉଁଠାରେ ପିତା ବର୍ତ୍ତମାନ ରହି ମାତାଙ୍କର ସମସ୍ତ ଅଭାବ ମୋଚନ କରୁଅଛନ୍ତି, ସେଠାରେ ଏପରି କଥା ଶ୍ରୁତିଯୋଗ୍ୟ ହୋଇ ପାରେ; କିନ୍ତୁ ଅନାଥା ମାତାଙ୍କୁ ଦୂରକୁ ଠେଲିଦେଇ ଯେଉଁ ପାପୀ ଓ ପାପୀୟସୀ ଆପଣାର ପୁତ୍ରକନ୍ୟା ଘେନି ସୁଖୋନ୍ମତ୍ତ, ସେମାନଙ୍କୁ କଦର୍ଯ୍ୟ ଦୁଷ୍କୃତିଫଳ ଛଡ଼ା ଆଉ କ'ଣ ବୋଲିବାକୁ ହେବ ? ପିତା ବର୍ତ୍ତମାନ ଥିଲେ ସୁଦ୍ଧା ପୁତ୍ର ମାତାଙ୍କ ପ୍ରତି ଆପଣାର କର୍ତ୍ତବ୍ୟ କେବେହେଁ ବିସ୍ମୃତ ହେବ ନାହିଁ । ଆମ୍ଭେମାନେ ପୂର୍ବ ଅଧ୍ୟାୟରେ କହିଅଛୁ ଯେ ମାତା କେନ୍ଦ୍ର, ଯେଉଁ ଗୃହରେ ମାତା କେନ୍ଦ୍ରରୂପିଣୀ, ସେ ଗୃହ ଅନ୍ନପୂର୍ଣ୍ଣାଙ୍କ ମନ୍ଦିର । ସେଠାରେ ଅନ୍ନବସ୍ତ୍ରର ଅଭାବ ନାହିଁ, ସେଠାରେ ରୋଗ ଶୋକର ପ୍ରାଦୁର୍ଭାବ ନାହିଁ । ସେଠାରେ ସାଂସାରିକ ଜ୍ୱାଳା ଯନ୍ତ୍ରଣା ଅନେକ ଊଣା । ମାତା ସେଠାରେ ଦେବୀରୂପେ ବିଦ୍ୟମାନ ଥାଇ ପୁତ୍ରକନ୍ୟା, ପୌତ୍ର ପୌତ୍ରୀ, ପୁତ୍ରବଧୂ ପ୍ରଭୃତି ସମସ୍ତଙ୍କର ସେବାରେ ଅଧିକାରିଣୀ ହୋଇ ସମସ୍ତଙ୍କୁ ତଦ୍‌ବଚନମୟରେ ଆଶୀର୍ବାଦ କରନ୍ତି । ସେ ଆଶୀର୍ବାଦର ମୂଲ୍ୟ ମୋହଗ୍ରସ୍ତ ଅନ୍ଧପକ୍ଷରେ ଅକିଞ୍ଚିତ୍କର ହୋଇ ପାରେ, କିନ୍ତୁ ମୋହମୁକ୍ତ ଚକ୍ଷୁଷ୍ମାନ୍ ନିକଟରେ ଅତ୍ୟଧିକ ।

ଲୋକେ କହିଥାନ୍ତି, "ମା ମରୁ, ମାଉସୀ ଥାଉ ।" ତାହାର ଅର୍ଥ ମାଉସୀ ଯେ ମା'ଠାରୁ ଗରୀୟସୀ— ଏହା ନୁହେଁ । ତାହାର ଅର୍ଥ ଏହି ଯେ ଯଦି କୌଣସି ହତଭାଗ୍ୟବ୍ୟକ୍ତି ମାତୃଶୂନ୍ୟ ହୁଏ, ସେ ଯେପରି ମାଉସୀର ସ୍ନେହରେ ଲାଳିତ ପାଳିତ ହୋଇ ପାରେ । ଏ କଥାର ଅବତାରଣାର ଉଦ୍ଦେଶ୍ୟ ଏହିଯେ, ମାଙ୍କ ବିନା ପୃଥିବୀରେ ଅନ୍ୟ ଆପଣାର ଲୋକ ନାହିଁ— ନାହିଁ—ନାହିଁ ।

ଗୋଟାଏ ବଡ଼ ସୁନ୍ଦର କଥା ମନେ ପଡ଼ୁଛି । ଏହି ନାରୀ ଯେତେବେଳେ ସ୍ତ୍ରୀ, ଭଉଣୀ, ମାଉସୀ, ପିଉସୀ ମାଇଁ ଇତ୍ୟାଦି ରୂପେ ବ୍ୟବହାର କରନ୍ତି ସେତେବେଳେ ଏକରୂପ, ପୁଣି ଯେତେବେଳେ ମାତୃରୂପ ଧାରଣ କରନ୍ତି, ସେ ସମୟର କଥା ସମ୍ପୂର୍ଣ୍ଣ ପୃଥକ୍ । ଅନ୍ୟାନ୍ୟ ସମ୍ବନ୍ଧରେ ସ୍ତ୍ରୀଜାତି ପରର କର୍କଶ କଥା ବା ବ୍ୟବହାର ସହିବାକୁ କ୍ଷମା ପରପାଇଁ ଏତେ କଷ୍ଟ ସ୍ୱୀକାର କରିବାକୁ ସମ୍ପୂର୍ଣ୍ଣ ଅସମର୍ଥ, କିନ୍ତୁ ମାତୃରୂପେ ସେ ସମସ୍ତ ସୁଗୁଣମାନଙ୍କର ପୂର୍ଣ୍ଣାଧାର, ସହିଷ୍ଣୁତାର ମୂର୍ତ୍ତି, ସ୍ନେହର ଭଣ୍ଡାର, ଅମୃତ ନିସ୍ୟନ୍ଦିନୀ । ନିଜର ଅମୃତମୟ ସ୍ତନ୍ୟ ଧାରଣ କରି ସେ ପୁତ୍ର-ମୁଖରେ ଝର ଝର ଧାରାରେ ଅମୃତ ବର୍ଷଣରେ ବ୍ୟାପୃତା ! ଧନ୍ୟ ଜନନୀ ! ଧନ୍ୟ ଅମୃତମୟି ! ଧନ୍ୟ ମାତୃସମ୍ବନ୍ଧ !

ପୁତ୍ର, କନ୍ୟା ଇତ୍ୟାଦି ସମ୍ବନ୍ଧ ସହିତ ମାତୃସମ୍ବନ୍ଧର ତୁଳନା ଅସମ୍ଭବ । ପୁତ୍ର, କନ୍ୟା ପର୍ବତର ନିମ୍ନସ୍ଥିତ ଭୂମିବତ୍ । ପର୍ବତ ଉପରୁ ଜଳ ଗଡ଼ିଯାଇ ନିମ୍ନଭୂମିରେ ଆଶ୍ରୟ ନିଏ । ସ୍ନେହ ସେହିପରି ପିତା ଓ ମାତାଙ୍କ ହୃଦୟକନ୍ଦରରୁ ବୋହିଯାଇ ପୁତ୍ରକନ୍ୟାମାନଙ୍କ ହୃଦୟରେ ପଡ଼େ । ପର୍ବତ ବା ପାହାଡ଼ର ନିମ୍ନଦେଶରୁ ଊର୍ଦ୍ଧ୍ୱଦେଶକୁ ପାଣି ଗଡ଼ିଯିବା ଯେପରି ଅସମ୍ଭବ, ପିତାମାତା ପୁତ୍ରକନ୍ୟାଙ୍କୁ ଯେପରି ସ୍ନେହରେ ପାଳନ କରନ୍ତି, ପୁତ୍ରକନ୍ୟାଙ୍କ ନିକଟରୁ ଠିକ୍ ସେହିପରି ଶ୍ରଦ୍ଧା ଆଶା କରିବା ମଧ୍ୟ ବିଡ଼ମ୍ବନା ମାତ୍ର । ଅନେକ ସ୍ଥଳରେ ପିତା, ମାତା, ଗୁରୁ, ଶିକ୍ଷକ ଗୋଟାଏ ଭ୍ରମରେ ପଡ଼ନ୍ତି । ସେମାନେ ଭାବନ୍ତି—ମୋର ପୁତ୍ର ବା ଶିଷ୍ୟ ବା ଛାତ୍ରକୁ ମୁଁ ଏତେ ସ୍ନେହ କଲି, ମାତ୍ର ସେ ତ କାହିଁକି ତାହାର ପ୍ରତିଦାନ ଦେଲା ନାହିଁ ? କିନ୍ତୁ ତାହା ଅସମ୍ଭବ । ସେ କୃତଜ୍ଞ ହୋଇ ପାରେ, କର୍ତ୍ତବ୍ୟନିଷ୍ଠ ହୋଇ ପାରେ ଏବଂ ହେବା ମଧ୍ୟ ସର୍ବାଦୌ ବିଧେୟ—କିନ୍ତୁ ସେପରି ସ୍ନେହ, ମମତା ତାହା ହୃଦୟରେ ଆସିବା ସମ୍ଭବପର ନୁହେଁ । ସମ୍ଭବପର ହେବ, ଯେତେବେଳେ ସେ ନିଜେ ପିତା, ଗୁରୁ ବା ଶିକ୍ଷକ ହେବ । ଏହାହିଁ ମାନବ ପ୍ରକୃତି ।

ଅନେକ ସମୟରେ ବନ୍ଧୁ ବା ମିତ୍ର ବହୁ ଉପକାର ସାଧନ କରନ୍ତି
ଏବଂ ପିତା, ମାତା, ଭାଇ, ବନ୍ଧୁ ଓ ସ୍ତ୍ରୀ ଅପେକ୍ଷା ବିଶ୍ୱାସର ପାତ୍ର ହୁଅନ୍ତି ।
ପୁଣି ବନ୍ଧୁ ବନ୍ଧୁ ସକାଶେ ଆପଣାର ପ୍ରାଣ ପର୍ଯ୍ୟନ୍ତ ଦେବାର
ଦୃଷ୍ଟାନ୍ତ ଦେଖାଯାଏ । ସେଭଳି ବନ୍ଧୁ ଅବଶ୍ୟ ବିରଳ; ମାତ୍ର ସେଭଳି
ମାତା ବିରଳ ନୁହନ୍ତି । ସୁତରାଂ ମାତୃସମ୍ବନ୍ଧ ଯେ ସମସ୍ତ ସମ୍ବନ୍ଧ ଅପେକ୍ଷା
ମଧୁମୟ ଓ ଉତ୍କୃଷ୍ଟ, ଏଥିରେ ଆଉ ସନ୍ଦେହ ନାହିଁ । ପୃଥିବୀରେ ଯେ
ସମସ୍ତ ପବିତ୍ର ଓ ପୂଜନୀୟ ବସ୍ତୁ ଅଛି, ସନ୍ତାନପରିବେଷ୍ଟିତା ଜନନୀ
ସେମାନଙ୍କର ଅନ୍ୟତମ । ପୁତ୍ରକନ୍ୟାପୂର୍ଣ୍ଣ ମାତୃକୋଡ଼ କି ମନୋହର
ଦୃଶ୍ୟ ! କବି ଗେଟେ (Goethe) ଏହି କଥାଟିକୁ ଅତି ସୁନ୍ଦର ଭାବରେ
ବ୍ୟକ୍ତ କରିଅଛନ୍ତି, "There is nothing more charming
than to see a mother with a child in her arms,
and nothing more venerable than a mother
among a number of her children."

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ମାତାଙ୍କ ପକ୍ଷରେ
ପୁତ୍ରହିଁ ଧନରତ୍ନ; ସେ ଅନ୍ୟ ଧନରତ୍ନରେ ସେହିପରି ବଶୀଭୂତ ନୁହନ୍ତି ।
ରୋମରାଜ୍ୟର ଇତିହାସରେ ଏହି ବିଷୟରେ ଗୋଟିଏ ଗଳ୍ପ ଅଛି । ଏକଦା
କୌଣସି ଐଶ୍ୱର୍ଯ୍ୟଶାଳିନୀ ରମଣୀ ରୋମୀୟ ଇତିହାସର ଅଳଙ୍କାରସ୍ୱରୂପ
ଗ୍ରେକାଇ (Gracchi) ନାମକ ଭ୍ରାତୃଦ୍ୱୟଙ୍କ ଜନନୀଙ୍କୁ ଆପଣାର
ବହୁମୂଲ୍ୟ ରତ୍ନରାଜି ଦେଖାଇ ଈଷତ୍ ଗର୍ବିତଭାବରେ ପ୍ରଶ୍ନ କରିଥିଲେ—
"ତୁମ୍ଭର କି କି ମୂଲ୍ୟବାନ୍ ରତ୍ନ ଅଛି ଦେଖାଇ ପାରିବ କି ?" ଗ୍ରେକାଇ
ଜନନୀ ସେତେବେଳେ ତାଙ୍କ କଥାର କୌଣସି ଉତ୍ତର ନ ଦେଇ ନୀରବ
ରହିଲେ । କିଛିକ୍ଷଣ ପରେ ତାଙ୍କର ପୁତ୍ରମାନେ ବିଦ୍ୟାଳୟରୁ ପ୍ରତ୍ୟାଗମନ
କଲେ । ସେ ସେମାନଙ୍କୁ ଦେଖାଇ ପ୍ରୋକ୍ତ ରମଣୀଙ୍କୁ କହିଲେ,
"ଏହିମାନେ ମୋର ଅମୂଲ୍ୟ ରତ୍ନ ।" ବସ୍ତୁତଃ ଏହାହିଁ ପ୍ରତ୍ୟେକ
ଜନନୀଙ୍କ ଅନ୍ତରର ସତ୍ୟ ।

---

# ତୃତୀୟ ଅଧ୍ୟାୟ

## ଜନନୀର ଉଦ୍ବେଗ

"The mother's heart is always with her children."

"To make a boy despise his mother's care is the straightest way to make him also despise his Redeemer's voice"—Ruskin.

ସନ୍ତାନ ନିମିତ୍ତ ଜନନୀର ଉଦ୍ବେଗ କେତେ ବେଳୁଁ ? ଗର୍ଭରେ ସନ୍ତାନୋତ୍ପତ୍ତିର ପୂର୍ବରୁ । ବୁଦ୍ଧିମାନ୍ ପିତା ମାତା ସୁପୁତ୍ର ପ୍ରସବାର୍ଥ ନାନା କଠୋର ନିୟମମାନ ମାନି ଚଳନ୍ତି । ଯେଉଁମାନଙ୍କର ମୂଳମନ୍ତ୍ର "କାମାର୍ଥେ କ୍ରିୟତେ ଭାର୍ଯ୍ୟା" ସେମାନେ ଏ କଥା ବୁଝି ପାରିବେ ନାହିଁ । କିନ୍ତୁ ଯେଉଁ-ମାନଙ୍କର ମୂଳମନ୍ତ୍ର "ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା" ସେମାନେ ବୁଝି ପାରିବେ ଯେ, ଗୋଟିଏ ଦୀର୍ଘଜୀବୀ, ଧୀମାନ୍, ଚରିତ୍ରବାନ୍, ଧର୍ମପରାୟଣ, ସୁସ୍ଥ ଓ ସବଳ ସନ୍ତାନର କାମନା କେବଳ କାମନା ନୁହେ, ଭୟାନକ ସାଧନା । ମାତା ଏହି ସନ୍ତାନ କାମନାରେ ଆପଣାର ଇନ୍ଦ୍ରିୟମାନଙ୍କୁ ବଶୀଭୂତ କରି କାୟମନୋବାକ୍ୟରେ ପବିତ୍ରଭାବର ଭାବୁକ ହୋଇ ଜୀବନଯାପନ କରନ୍ତି । ସେତେବେଳେ ବିଳାସ କମି ଆସେ, ସୁପୁତ୍ରପ୍ରାପ୍ତିବାସନା ବଳବତୀ ହୁଏ । ରମଣୀ ସେତେବେଳେ ରଙ୍ଗ ରହସ୍ୟ ଭଲ ପାଏ ନାହିଁ—ଦେବଦେବୀଙ୍କ ପାଖରେ ସୁପୁତ୍ରପାଇଁ ପ୍ରାର୍ଥନାହିଁ ତାହାର ଏକମାତ୍ର ଧ୍ୟାନ ହୋଇପଡ଼େ । ସେତେବେଳେ ସେ ପୁତ୍ରବତୀ ରମଣୀମାନଙ୍କ ପାଖକୁ ଯାଇ ସେମାନଙ୍କ ସନ୍ତାନମାନଙ୍କୁ କୋଳରେ ଧରି ସନ୍ତାନବାତ୍ସଲ୍ୟ ସମ୍ଭୋଗ କରେ ଏବଂ ସନ୍ତାନପାଳନ ସମ୍ବନ୍ଧରେ ବହୁ ଅଭିଜ୍ଞତା ଲାଭ କରେ । କ୍ରମେ କ୍ରମେ ବିଳାସପୂର୍ଣ୍ଣ ହୃଦୟ କର୍ତ୍ତବ୍ୟର ଅଧିକାରକୁ ଚାଲି ଆସେ । ଏହି ସମୟର ଅଭିଜ୍ଞତା ବଡ଼ ମୂଲ୍ୟବାନ୍ । ମାତା ଯାହା କଲେ ପୁତ୍ର କନ୍ୟାର ଅନିଷ୍ଟର ଆଶଙ୍କା, ସେ

ତାହା ପରିତ୍ୟାଗ କରିବାକୁ ପ୍ରାଣପଣ ଚେଷ୍ଟା କରେ । ସ୍ୱାର୍ଥତ୍ୟାଗର ବୀଜ ମଧ୍ୟ ଏହି ସମୟରୁ ହୃଦୟରେ ପ୍ରୋଥିତ ହୁଏ । କିନ୍ତୁ ତାହା ଅତି ନିଭୃତରେ-ଅତି ଗୋପନରେ ସାଧିତ ହୁଏ । ବୋଧହୁଏ, ତାହା ବ୍ୟତୀତ ଅତି ପ୍ରିୟସଙ୍ଗି ମଧ୍ୟ ତାହା ଜାଣିବାକୁ ସମର୍ଥ ହୁଏ ନାହିଁ । ଏହି ସମୟରେ ସେ ଯେ ସାଂସାରିକ ଆନନ୍ଦପ୍ରତି ବୀତଶ୍ରଦ୍ଧ ହୋଇଯାଏ, ତାହା ନୁହେ; କିନ୍ତୁ ତାହାର ଅଗୋଚରରେ ଅନ୍ୟାନ୍ୟ ଆମୋଦ ଆହ୍ଲାଦର ଛଟା ଓ ସ୍ତନନ୍ଧୟପ୍ରୀତିର ଜ୍ୟୋତିର ଆରମ୍ଭ ହୁଏ; ସୁତରାଂ ମନଟା ଶୂନ୍ୟ ହୁଏ ନାହିଁ । ମନରେ ଯେପରି ଆନନ୍ଦ ଥିବାର କଥା, ତାହାହିଁ ରହିଯାଏ । ବରଂ ଆବିଳାନନ୍ଦ ପରିବର୍ତ୍ତନରେ ନିର୍ମଳାନନ୍ଦରେ ପ୍ରାଣ ଉତ୍ଫୁଲ୍ଲ ପଡ଼େ । ଆବିଳାନନ୍ଦକୁ ଲଙ୍ଘି ଯାଇ ବିମଳାନନ୍ଦଜ ସ୍ଫୂର୍ତ୍ତି ନାରୀପ୍ରାଣକୁ ଜାଗ୍ରତ କରେ ।

ଦେଖୁଁ ଦେଖୁଁ ଗର୍ଭସଞ୍ଚାରଦ୍ୱାରା ରମଣୀର ଚିରପୋଷିତ ଆକାଙ୍କ୍ଷା ଚରିତାର୍ଥ ହୁଏ । ରମଣୀ ଏହି ଗର୍ଭସଞ୍ଚାରରେ ଲଜ୍ଜାନୁଭବ ନ କରି ଶାଶୁ, ଶ୍ୱଶୁର, ନଣନ୍ଦ, ଭାଉଜ ପ୍ରଭୃତି ସମସ୍ତଙ୍କର ଆନନ୍ଦପୂର୍ଣ୍ଣବଦନ ଦେଖି ନିଜେ ଅପାର ଆନନ୍ଦ ଅନୁଭବ କରେ । ସଙ୍ଗିନୀମାନେ ତାହାକୁ ଧନ୍ୟ ଧନ୍ୟ କରନ୍ତି ଏବଂ ଯେଉଁମାନେ ବନ୍ଧ୍ୟାତ୍ୱର ଆଶଙ୍କାରେ ଥାନ୍ତି, ସେମାନଙ୍କର ଆଶା ଓ ଆନନ୍ଦ ଦ୍ୱିଗୁଣିତ ହୁଏ ।

ଏ ସମସ୍ତ ଆନନ୍ଦମଧ୍ୟରେ ମାତାର ଉଦ୍ବେଗର ସୀମା ନିର୍ଦ୍ଧାରଣ କରି-ପାରିବା କି ? ଜନନୀ ବର୍ତ୍ତମାନ ପୁତ୍ର ଜନ୍ମ ହେବା ପର୍ଯ୍ୟନ୍ତ ଅନ୍ତତଃ ୯।୧୦ ମାସ ତୀବ୍ର ବ୍ରହ୍ମଚର୍ଯ୍ୟ ବା ଅସିଧାରବ୍ରତ ପାଳନରେ ବଦ୍ଧପରିକର । ଶାଶୁ ଶ୍ୱଶୁର ତାକୁ କହନ୍ତି, "ଦେଖ, ତୁମ୍ଭେ ଯାହା ତାହା ଖାଇବ ନାହିଁ, ତାହାହେଲେ ଗର୍ଭସ୍ଥ ସନ୍ତାନର ଅମଙ୍ଗଳ ହେବ ।" ରମଣୀ ସେତିକିରେ ତମକି ପଡ଼ି ସେମାନଙ୍କ କଥାକୁ ବେଦବାକ୍ୟବତ୍ ମନେ କରି କଠୋରଭାବରେ ଜୀବନ ପରିଚାଳନା କରିବାରେ ତିଳେ ମାତ୍ର କୁଣ୍ଠିତ ନ ହୋଇ ବରଂ ସେ ଆଦେଶ ପାଳନ କରି ବିମଳ ଆନନ୍ଦ

ଅନୁଭବ କରେ । ସେତେବେଳେ ଶକ୍ତିଅନୁଯାୟୀ ସାବଧାନ ଥିଲେ ମଧ୍ୟ ତାହାର ଶରୀର ବେଳେ ବେଳେ ଅସୁସ୍ଥ ହୋଇପଡ଼େ । ସେ ସେହି ଅସୁସ୍ଥତା ମଧ୍ୟରେ ନିଜର କଷ୍ଟପ୍ରତି ଆଦୌ ଭ୍ରୂକ୍ଷେପ କରେ ନାହିଁ । ଏକମାତ୍ର ଚିନ୍ତା, ଏକମାତ୍ର ଉଦ୍ବେଗ—ମୋର ସନ୍ତାନର କୌଣସି ଅନିଷ୍ଟ ହେବ ନାହିଁ ତ ? ଏହି ଦଶ ମାସର ପ୍ରତ୍ୟେକ ଦିନ ସ୍ତ୍ରୀମାନଙ୍କୁ ଗୋଟିଏ ଗୋଟିଏ ଯୁଗପରି ପ୍ରତୀୟମାନ ହୁଏ ।

ସନ୍ତାନଜନ୍ମର ଅବ୍ୟବହିତପୂର୍ବେ ପ୍ରସୂତିର ପ୍ରସବବେଦନା ଆରମ୍ଭ ହୁଏ । ଏ ବେଦନାର ତୀବ୍ରତା ଓ ପରିମାଣ କଳ୍ପନା କରିବା ଏକମାତ୍ର ନାରୀଜାତି ପକ୍ଷରେ ସମ୍ଭବ, ଅନ୍ୟମାନେ କେବଳ ସ୍ଥୂଳଦ୍ରଷ୍ଟା ବା ବାହ୍ୟ ସହାନୁଭୂତି ପ୍ରଦର୍ଶକ । କେବଳ ଏହି ସମୟର କଷ୍ଟ ପ୍ରତ୍ୟକ୍ଷ କଲେ ମାତୃଋଣ ଯେ ଅପରିଶୋଧ୍ୟ, ଯେ କୌଣସି ଲୋକ ସହଜରେ ବୁଝି ପାରିବେ ଏବଂ ମାତା ଯେ ପୃଥିବୀରେ ସର୍ବଶ୍ରେଷ୍ଠ, ତାହା ମଧ୍ୟ ଜାଣିବାକୁ ବିଳମ୍ବ ହେବ ନାହିଁ । ଦିନେ, ଦୁଇଦିନ ବା ତିନିଦିନବ୍ୟାପୀ କଷ୍ଟ ଦେଖିଲେ ଦ୍ରଷ୍ଟା ତ ଅଧୀର ହୋଇଉଠିବ, ଭୋକ୍ତାର କଥା କଣ କହିବା ? ପୁଣି କାହାର କାହାର ଅନାୟାସରେ ସନ୍ତାନପ୍ରସବ ହୁଏ ନାହିଁ ବୋଲି ନାନା ଯନ୍ତ୍ର ପ୍ରୟୋଗ କରି ପ୍ରସବ କରାଇବାକୁ ହୁଏ । ସେହି ସବୁ ଯନ୍ତ୍ର ପ୍ରୟୋଗର କଷ୍ଟ ଭାବିଲେ ମଧ୍ୟ ଶରୀର ରୋମାଞ୍ଚିତ ହୋଇଉଠେ । ଆହା ! ଏହି ସମୟରେ ପ୍ରସୂତି ସ୍ଥାନେ ସ୍ଥାନେ ମୃତ୍ୟୁମୁଖରେ ପତିତ ହୁଏ, ସ୍ଥାନେ ସ୍ଥାନେ କାଳକବଳରୁ ବହୁ କଷ୍ଟରେ ପରିତ୍ରାଣ ପାଇ ପୁତ୍ର ବା କନ୍ୟାମୁଖ ଦର୍ଶନ କରେ । ତତ୍ପରେ ସୂତିକାଗାରରେ ମାସାବଧି ରହି ପ୍ରସୂତି ନରକଯନ୍ତ୍ରଣା ଭୋଗ କରିଥାଏ ।

ଏହି ମାସକର ଶିଶୁଟି ଅନ୍ତତଃ ବର୍ଷକର ହେବାପାଏ ତାହାର କ୍ଷୀଣ ଜୀବନ-ପ୍ରଦୀପକୁ ନିରନ୍ତର ସତେଜ ରଖିବାପାଇଁ ମାତାର ଯେ ଉଦ୍ବେଗ, ତାହାର ଅଣୁମାତ୍ର ଅନୁମାନ କରିବା ଆମ୍ଭମାନଙ୍କ ବୁଦ୍ଧିର

ଅଗୋଚର । ଶିଶୁଟିର କ୍ରନ୍ଦନର ବିରାମ ନାହିଁ । ମାତାଙ୍କର ମଧ୍ୟ ଉଦ୍‌ବେଗର ଶାନ୍ତି ନାହିଁ । ଶିଶୁର ଅର୍ଥପୂର୍ଣ୍ଣ ବା ନିରର୍ଥକ କ୍ରନ୍ଦନରେ ମାତୃହୃଦୟ-ତନ୍ତ୍ରୀ ଯେ କିପରି ଆଘାତ ପ୍ରାପ୍ତ ହୁଏ, ପଶୁପକ୍ଷୀଙ୍କଠାରୁ ଆରମ୍ଭ କରି ମାନବ ପର୍ଯ୍ୟନ୍ତ-ପ୍ରତ୍ୟେକ ଜୀବ ଜନନୀଙ୍କର ପ୍ରକୃତ ପର୍ଯ୍ୟବେକ୍ଷଣ କଲେ ତାହାର କିଞ୍ଚିତ୍ ଆଭାସ ମିଳିବ । ମଶା, ପିମ୍ପୁଡ଼ିଠାରୁ ଆରମ୍ଭ କରି ସାପ ବେଙ୍ଗପର୍ଯ୍ୟନ୍ତ ସମସ୍ତଙ୍କ ନିକଟରୁ ମାତା ନିଜ ଶିଶୁର ବିପଦ ଅଶଙ୍କା କରନ୍ତି ଏବଂ ସର୍ବଦା ସତର୍କ ଥାନ୍ତି । ଏହି ସମୟରେ ଖାଇବା, ଶୋଇବା ଇତ୍ୟାଦି ସମସ୍ତ ବିଷୟରେ ସାବଧାନ ହୋଇ ଶିଶୁହିତଚିନ୍ତାରେ ମାତାଙ୍କୁ ଦିନାତିପାତ କରିବାକୁ ହୁଏ ।

ଦିନ ଦିନ ନାହିଁ, ରାତି ରାତି ନାହିଁ, ଭୋଜନ ଶୟନ ପ୍ରଭୃତି ସମସ୍ତ ବିଷୟରେ ମାତାଙ୍କୁ ଅତ୍ୟନ୍ତ କ୍ଲେଶ ସ୍ୱୀକାର କରିବାକୁ ହୁଏ । ୮।୧୦ ମାସ ବା ଏକବର୍ଷ ବୟସରେ ଶିଶୁଟି ଅଣ୍ଟୋଇ ଶିଖିଲେ ମାତାଙ୍କର ଆନନ୍ଦ ବୃଦ୍ଧି ପାଏ ସତ୍ୟ, କିନ୍ତୁ ଉଦ୍‌ବେଗ ହ୍ରାସ ହୁଏ ନାହିଁ—ବରଂ ବଢ଼େ । କାରଣ ଏତେଦିନ ଯାଏଁ ସେ ମାତୃକୋଡ଼ ଛାଡ଼ିଯାଇ ପାରୁ ନ ଥିଲା, ମାତା ହୃଦୟର ବସ୍ତୁକୁ କୋଳରେ ଯେପରି ହୃଦୟ ନିକଟରେ ରଖିଥିଲେ, କିନ୍ତୁ ପିଲା ବର୍ତ୍ତମାନ ଅଣ୍ଟୋଇ ଶିଖି ମାତାଙ୍କଠାରୁ ଦୂରକୁ ଯିବାଦ୍ୱାରା ଶିଶୁ କେଉଁଠାରେ ପଡ଼ିଯିବ, ହାତ ଗୋଡ଼ ଭାଙ୍ଗିଯିବ, ଦେହରେ ମୁଣ୍ଡରେ କେଉଁଠି କଣ ବାଜିଯିବ, ଇତ୍ୟାଦି ଚିନ୍ତାରେ ମାତା ବ୍ୟସ୍ତ ହୋଇ-ପଡ଼ନ୍ତି । ଶିଶୁଟିକି ସ୍ନେହ କରି କେହି କୌଣସିଠାକୁ ଘେନିଗଲେ ହର୍ଷ ଓ ଉତ୍କଣ୍ଠା ଯୁଗପତ୍ ମାତୃହୃଦୟକୁ ଅଧିକାର କରେ । ସେ ଭାବୁଥାନ୍ତି, ମୋର ହୃଦୟସର୍ବସ୍ୱ କେତେବେଳେ ଘରକୁ ଫେରିବ, କେତେବେଳେ ତାହାର ମୁଖପଦ୍ମ ନିରୀକ୍ଷଣ କରି ନିଶ୍ଚିନ୍ତ ହେବି, କେତେବେଳେ ମୋ ଚିନ୍ତାମଣି କୋଳରେ ବସି ମୋର ଚିନ୍ତା ଦୂର କରିବ ? ଯେତେ-ବେଳେ ଶିଶୁ ମାତୃସ୍ତନ୍ୟପିପାସାରେ କାନ୍ଦି କାନ୍ଦି ଫେରି ଆସେ,

ସେତେବେଳେ ମାତା କି ଆନନ୍ଦ ଓ ଆବେଗରେ ରୋଦନଶୀଳ
ସନ୍ତାନକୁ ଅମୃତପାନ କରାନ୍ତି ! ଯେତେବେଳେ ଧନହୀନା, ଅସହାୟା
ମାତା ଜୀବିକା ଉପାର୍ଜ୍ଜନପାଇଁ ପରଗୃହରେ କାର୍ଯ୍ୟ କରିବାକୁ ବାଧ୍ୟ
ହୁଅନ୍ତି, ସେତେବେଳେ ସନ୍ତାନକୁ ପିଠିଅଡ଼େ ବାନ୍ଧି ସେ କେତେ
ନିଶ୍ଚିନ୍ତରେ କାର୍ଯ୍ୟ କରନ୍ତି ! ସେ ଦୃଶ୍ୟ କେଉଁ ଦର୍ଶକର ମନକୁ ହରଣ
ନ କରିବ ? ଏଥିପାଇଁ ନ କହି ରହି ହୁଏ ନାହିଁ ଯେ—ଧନ୍ୟ ମାତୃସୃଷ୍ଟି !
ଧନ୍ୟ ସେ ମାତୃସ୍ରଷ୍ଟା !

ପୁଣି ଶିଶୁଟି ଚତୁର୍ଥ ବା ପଞ୍ଚମ ବର୍ଷରେ ପଦାର୍ପଣ କଲେ ସ୍ୱତଃ
ଏଣେ ତେଣେ ବାହାରିଯାଏ । ବାଟରେ କୁକୁର, ବିଲେଇ,
ସଙ୍ଗୀ ପ୍ରଭୃତି ଯାହାକୁ ପାଏ, ତାହା ସହିତ ଖେଳିବାକୁ ଆରମ୍ଭ କରେ;
ଖେଳୁଁ ଖେଳୁଁ କେତେବେଳେ କୁକୁର, ବିଲେଇଙ୍କୁ ପ୍ରହାର କଲେ
ସେମାନେ କାମୁଡ଼ି ଦିଅନ୍ତି କିମ୍ବା ଦୁଷ୍ଟ ବାଳକ ସହିତ କଳହ କରି ପ୍ରହାର
ବା ଭର୍ତ୍ସନା ପାଇ କାନ୍ଦୁ କାନ୍ଦୁ ଧୂଳିଧୂସରିତ ଦେହରେ ଗୃହକୁ ଫେରି-
ଆସେ । ମାତା ସେ ମ୍ଳାନ ଓ ଅଶ୍ରୁସିକ୍ତ ମୁଖମଣ୍ଡଳରେ ସ୍ନେହ-ଚୁମ୍ବନ କରି
ପ୍ରଥମରେ ସନ୍ତାନର ପ୍ରାଣକୁ ଶୀତଳ କରନ୍ତି ଓ ପରେ ତାହାକୁ ପରିଷ୍କାର
ପରିଚ୍ଛନ୍ନ କରିଦେଇ ଗୃହର ବହିର୍ଦ୍ଦେଶକୁ ଯିବାକୁ ନିଷେଧ କରନ୍ତି ।
କିନ୍ତୁ ବାଳକ ବିସ୍ମରଣଶୀଳ । ସେ ଯାହା ନିକଟରୁ କର୍କଶ ବ୍ୟବହାର
ପାଇଥାଏ, ପୁଣି ତାହା ନିକଟକୁ ଯାଇ କ୍ରୀଡ଼ା କୌତୁକରେ ମତ୍ତ ହୁଏ ।
ଏହାକୁ କହନ୍ତି ବାଳକସ୍ୱଭାବସୁଲଭ ସରଳତା । ଏହି ସରଳତାର
ଅବଲମ୍ବନରେ ସେ ନିଜେ ସୁଖରେ କାଳ ହରଣ କରେ, କିନ୍ତୁ ଜନନୀ
ଚିନ୍ତାରେ ଅସ୍ଥିଚର୍ମସାର ହୋଇଯାନ୍ତି । ବାଳକ ଖେଳସାରି
ଗୃହକୁ ଫେରିବା ମାତ୍ରକେ ଜନନୀ ଯେତେ ପରିଷ୍କୃତ ବସନ ପିନ୍ଧି ଥାନ୍ତୁ,
ସନ୍ତାନର ଶରୀର ପରିଷ୍କାର କରିବାକୁ ଯାଇ ତାହାକୁ ମଳିନ କରିବାରେ
କୁଣ୍ଠିତ ହୁଅନ୍ତି ନାହିଁ ।

ପଞ୍ଚମ ବର୍ଷରେ ପୁଣି ବାଳକର ବିଦ୍ୟାରମ୍ଭ । ଚତୁର୍ଥ ବର୍ଷରୁ ପିତାଙ୍କ ସ୍କନ୍ଧରେ ପୁତ୍ରର ବିଦ୍ୟାଶିକ୍ଷାର ଭାର ପଡ଼ିଯାଏ । ଗଳ୍ପ ଛଳରେ ସେ ତାହାକୁ ବିଦ୍ୟା ଆଡ଼କୁ ପରିଚାଳନ କରନ୍ତି । ପଞ୍ଚମ ବର୍ଷରେ ଶିକ୍ଷକଙ୍କ ହସ୍ତରେ ପୁତ୍ରର ବିଦ୍ୟାଶିକ୍ଷାର ଭାର ନ୍ୟସ୍ତ ହୁଏ । ଅବଧାନ ବା ଗ୍ରାମ୍ୟ ଶିକ୍ଷକ ବୃଦ୍ଧ ଓ ଅଭିଜ୍ଞ ହୋଇଥିଲେ ମାତାଙ୍କର ବିଶେଷ ଚିନ୍ତାର ବିଷୟ ନ ଥାଏ, କିନ୍ତୁ ଅନଭିଜ୍ଞ ଚଞ୍ଚଳମତି ଯୁବକ ହସ୍ତରେ ବାଳକକୁ ସମର୍ପଣ କରି ମାତାଙ୍କର ଚିନ୍ତାର ଅବଧି ରହେ ନାହିଁ । ବେତ୍ରଚାଳନପଟୁ ଅଧୀର ଶିକ୍ଷକ ସମୟ ସମୟରେ ବାଳକର ସୁକୁମାର ଶରୀରରେ ନିଜର ଅପଟୁତା ଓ ଅଧୀରତାର ଚିହ୍ନସ୍ୱରୂପ ବେତ୍ରଚିହ୍ନ ମଧ୍ୟ ରଖି ଦିଅନ୍ତି । ପୁତ୍ର ଗୃହକୁ ଆସି ଏକମାତ୍ର ଶୋକପାସୋରି ମାତାଙ୍କ ନିକଟରେ ନିଜର ଯନ୍ତ୍ରଣାଲୀସଞ୍ଚିତ ଶୋକାଶ୍ରୁ ଢାଳିଦେଇ ସାନ୍ତ୍ୱନା ଲାଭ କରେ । କିନ୍ତୁ ମାତା ସେ ବେତ୍ରଚିହ୍ନାଙ୍କିତ ସ୍ଥାନକୁ ବାରମ୍ବାର ନିରୀକ୍ଷଣ କରି ଶୋକାଶ୍ରୁ ନୀରବରେ ପୋଛିଦେଉଥାନ୍ତି ଏବଂ ସମୟ ସମୟରେ ପୁତ୍ରକୁ ବିଦ୍ୟାଳୟ ଶିକ୍ଷା ଦେବାପାଇଁ ଅନିଚ୍ଛୁକ ହୁଅନ୍ତି । ଏହିପରି ଭାବରେ ଅନଭିଜ୍ଞ ଶିକ୍ଷକ, ଦୁଷ୍ଟ ସଙ୍ଗୀ ପ୍ରଭୃତିଙ୍କ ଭୟ ପୁତ୍ରର ପଞ୍ଚବର୍ଷଠାରୁ ପ୍ରାୟ ୮।୯ ବର୍ଷ ପର୍ଯ୍ୟନ୍ତ ମାତାଙ୍କ ପ୍ରାଣକୁ ଆନ୍ଦୋଳିତ କରେ । ଅବଶ୍ୟ ଏଥିମଧ୍ୟରେ ବାଳକ ରୋଗାକ୍ରାନ୍ତ ନୋହିଲେ ରକ୍ଷା; ନଚେତ୍ ରୁଗ୍ଣ ସନ୍ତାନର ରୋଗଶଯ୍ୟା ପାର୍ଶ୍ୱରେ ଶୁଶ୍ରୂଷା କରିବାକୁ ଯାଇ ମାତାଙ୍କର ଭୋଜନ, ଶୟନ, ଆଳାପ ପ୍ରଭୃତି ସମସ୍ତ କାର୍ଯ୍ୟ ସ୍ଥଗିତ ହୋଇଯାଏ ।

ଦଶବର୍ଷଠାରୁ ପଞ୍ଚଦଶବର୍ଷପର୍ଯ୍ୟନ୍ତ ପୁତ୍ରର ଶିକ୍ଷାକାମନାରେ ମାତାଙ୍କ ହୃଦୟ ପୂର୍ଣ୍ଣ ହୁଏ । କେଉଁଠାରୁ ତାହାର ସ୍କୁଲଫିସ୍‌, କେଉଁଠାରୁ ପୁସ୍ତକ ଓ ପାଠର ଅନ୍ୟାନ୍ୟ ଉପକରଣ, କେଉଁଠାରୁ ତାହାର ସୁନ୍ଦର ପରିଧେୟ ପ୍ରଭୃତିର ସଂସ୍ଥାନ ହେବ, ସେହି ଚିନ୍ତାରେ ମାତାଙ୍କୁ ଆକୁଳ ହେବାକୁ ହୁଏ । ଏହି ଉତ୍କଳ ଦେଶର ଭଦ୍ରପରିବାର ମଧ୍ୟରେ

ଏପରି ଜନନୀ ବିରଳ ନୁହନ୍ତି, ଯେ ଅର୍ଥାଭାବରେ ପଞ୍ଚ ପଇସାଏ ବା ଦୁଇ ପଇସାର ମୁଢ଼ିକୁ ପଖାଳଭାତରେ ଭିଜାଇ ପୁତ୍ରମାନଙ୍କୁ ଖାଇବାକୁ ଦେଇ ନିଜେ ଅନଶନରେ ଦିନ ପରେ ଦିନ, ରାତ୍ରି ପରେ ରାତ୍ରି ଅତିବାହିତ କରୁଥାନ୍ତି । ଏହି ଉତ୍କଳରେ ଅନ୍ୟାନ୍ୟ ଶାକସବଜୀ କଥା ତେଣିକି ଥାଉ, ତୈଳସମ୍ବନ୍ଧବିହୀନ ଲବଣାକ୍ତ ସିଦ୍ଧ ଶାକ ଏକମୁଷ୍ଟି ଶୁଷ୍କ ବା ପ୍ରକ୍ଷାଳିତ ଅନ୍ନ ସହିତ ମାତାଙ୍କୁ ଶୋକାକୁଳଚିତ୍ତରେ ପରିବେଷଣ କରିବାକୁ ହୁଏ । ଏହି ଉତ୍କଳରେ ଏପରି ଦରିଦ୍ରପରିବାରର ଅଭାବ ନାହିଁ, ଯେଉଁଠାରେ ମାତା ଶୀତକାଳରେ ପୁତ୍ରକନ୍ୟାଙ୍କ ଶୈତ୍ୟନିବାରଣର ଉପାୟାନ୍ତର ନ ଦେଖି ନିଜେ ଅନାବୃତ ଅଙ୍ଗରେ ରାତ୍ରି ଯାପନ କରି ବସ୍ତ୍ରାଞ୍ଚଳଦ୍ୱାରା ପୁତ୍ରକନ୍ୟାଙ୍କ ଅଙ୍ଗ ଘୋଡ଼ାଇ ଦେଇଥାନ୍ତି । ଅନେକକୁ ଦେଖାଯାଏ— କେତେ କେତେ ଆପଣାର ସ୍ନେହ-ପିତା, ଭାଇ, ବନ୍ଧୁ, ଆତ୍ମୀୟବର୍ଗ ସୁଖ-ନିଦ୍ରାରେ ମଗ୍ନ; କିନ୍ତୁ ଏକା ସେହି ଜନନୀ ପୁତ୍ରର ସୁଖକାମନାରେ ଉନ୍ନିଦ୍ର ! ପୁତ୍ରର ୧୦ ବର୍ଷ ବୟସରୁ ୨୫ ବର୍ଷ ପର୍ଯ୍ୟନ୍ତ ପନ୍ଦର ବର୍ଷ ମଧ୍ୟରେ ମାତାଙ୍କ ହୃଦୟ ଯେ କେତେଭାବରେ ଆନ୍ଦୋଳିତ ହୁଏ, ତାହା ଭାବିଲା-ବେଳକୁ ଅଙ୍ଗ ଅବସନ୍ନ ହୋଇଯାଏ, ଲେଖନୀ ଆଉ ଚଳେ ନାହିଁ । ନିଃସହାୟ ମାତା ପରଗୃହରେ ଦାସତ୍ୱ ସ୍ୱୀକାର କରି ପୁତ୍ରକୁ ଶିକ୍ଷା ଦେବା ଦୃଷ୍ଟାନ୍ତ ବିରଳ ନୁହେ । ପୁତ୍ରର ସାଧ୍ୟ କ'ଣ ଯେ, ସେ ମାତୃହୃଦୟର ସ୍ନେହଭଣ୍ଡାରର ଯତ୍କିଞ୍ଚିତ୍ ଆଭାସ ପାଇବ ? ଦେଖାଯାଏ, କୌଣସି କୌଣସି ଚିନ୍ତାଶୂନ୍ୟ ଅର୍ବାଚୀନ ପୁତ୍ର ନିଜର ସ୍ୱାର୍ଥରେ ସାମାନ୍ୟ ବାଧା ପଡ଼ିଲାକ୍ଷଣି କ୍ରୋଧାନ୍ଧ ହୋଇ ପରମସ୍ନେହମୟୀ ମାତାଙ୍କ ପ୍ରତି କଟୁବାକ୍ୟ ପ୍ରୟୋଗ କରେ । ପୁଣି କୌଣସି କୌଣସି ସ୍ଥଳରେ ପୁତ୍ର ମାତାଙ୍କୁ ପ୍ରହାର ମଧ୍ୟ କରିଥାଏ ! ସେତେବେଳେ ସ୍ନେହସୁଧାବର୍ଷିଣୀ ସନ୍ତାନର ମଙ୍ଗଳା-କାଙ୍କ୍ଷିଣୀ ମାତା ସଜଳ ହୋଇ ଭଗବାନଙ୍କ ନିକଟରେ ତାହାର ଦୋଷର କ୍ଷମା ପ୍ରାର୍ଥନା କରନ୍ତି । ଏହି କଥାକୁ ଲକ୍ଷ୍ୟ କରି କବି ଇଲିୟଟ୍ ଯଥାର୍ଥରେ କହିଅଛନ୍ତି—

"The mother's yearning feels the presence of the cherished child even in the degraded man."

ମାତୃହୃଦୟରେ ଅଭିଶାପ ନାହିଁ—ଅଛି ଆଶୀର୍ବାଦ; ଗରଳର ନାମଗନ୍ଧ ନାହିଁ—ଅଛି ପ୍ରେମାମୃତ; ଅଧୀରତାର ଚିହ୍ନ ନାହିଁ—ଅଛି ଅପାର ଅମାନୁଷୀ ସହିଷ୍ଣୁତା । ଯେତେବେଳେ ବାଳକର ଦୋଷ ବା ତ୍ରୁଟି ସଂଶୋଧନ କରିବାକୁ ଯାଇ ପିତା, ଅଗ୍ରଜ ବା ଅନ୍ୟାନ୍ୟ ଗୁରୁଜନ ତାହାକୁ କଠୋର ଶାସନାଧୀନ କରନ୍ତି, ଯେତେବେଳେ ବାଳକ ଚତୁର୍ଦ୍ଦିଗରେ କର୍ତ୍ତବ୍ୟର ମରୁଭୂମି ବ୍ୟତୀତ ଆଉ କିଛି ଦେଖି ପାରେ ନାହିଁ, ଯେତେବେଳେ ଅପାତ ନୀରସ ଜୀବନଭାର ବହନରେ ସେ ଆପଣାକୁ ଅକ୍ଷମ ମନେ କରେ, ସେତେବେଳେ ଜନନୀରୂପ ଖଣ୍ଡିଏ ଓୟେସିସ୍ ବା ମରୁଦ୍ୟାନ ପାଖକୁ ଯାଇ ନିଜର ଶାରୀରିକ, ଓ ମାନସିକ ସମସ୍ତ କ୍ଲାନ୍ତି ଅପନୋଦନ କରି ଜୀବନକୁ ପୁଣି ସରସ, ସତେଜ ଓ କାର୍ଯ୍ୟକ୍ଷମ କରେ । ପୁତ୍ରପକ୍ଷରେ ପିତାର କଠୋର ଶାସନ ଯେପରି ପ୍ରୟୋଜନୀୟ, ମାତାର କୋମଳ ଆଶ୍ୱାସନା ମଧ୍ୟ ସେହିପରି ପ୍ରୟୋଜନୀୟ । ଏହି ଦୁଇଟିର ଏକତ୍ର ସମାବେଶ ନ ହେଲେ ଚଳେ ନାହିଁ — ବାସ୍ତବିକ ଜୀବନ ଭାରକ୍ରାନ୍ତ ବୋଧ ହୁଏ । ତେବେ ମାତାର କୋମଳ ଆଶ୍ୱାସନା ମଧ୍ୟରେ ପୁତ୍ରର ପାପ ବା ଅନ୍ୟାୟର ପ୍ରଶ୍ରୟ ନାହିଁ । ସେ ଆଶ୍ୱାସନା କେବଳ ଅକ୍ଷମ ପୁତ୍ରକୁ କ୍ଷମ କରିବାପାଇଁ; ଦୁର୍ବଳକୁ ସବଳ କରିବାପାଇଁ; ନିସ୍ତେଜକୁ ତେଜୀୟାନ୍ କରିବାପାଇଁ । ଏହି ସମୟରେ ପୁତ୍ରର ପକ୍ଷପାତରେ କୃତକାର୍ଯ୍ୟତା ଜାଣି ପାରି ମାତା ନିଜର ଆନନ୍ଦକୁ ସଂଯତ ରଖି ଅନ୍ୟାନ୍ୟଙ୍କର ଆନନ୍ଦ ସମ୍ଭୋଗ କରନ୍ତି । ତାଙ୍କର ଇଚ୍ଛା—ମୋର ପୁତ୍ରର ପ୍ରଶଂସା ମୋ ମୁହଁରୁ ନ ବାହାରି ଅନ୍ୟ ମୁଖରୁ ବାହାରୁ । ମାତା ସବୁବେଳେ ପୁତ୍ରର ଶାରୀରିକ, ମାନସିକ ଓ ଆଧ୍ୟାତ୍ମିକ ଉନ୍ନତିଅଡ଼କୁ ଲକ୍ଷ୍ୟ ରଖି ତାହାକୁ ସେହି ଭାବରେ ଗଠନ କରନ୍ତି ଏବଂ ପ୍ରୋକ୍ତ ଉନ୍ନତିରେ ନିଜର ହର୍ଷ

ଅନ୍ୟକୁ ଜ୍ଞାପନ ନ କରି ଅନ୍ୟର ଦୁର୍ଦ୍ଦଶାରେ ହିଁ ଜାଣି ପାରି ଜୀବନକୁ ସାର୍ଥକ ମନେ କରନ୍ତି । ଯଦି ସବୁଠି ଜନନୀମାନଙ୍କର ଏପରି ବ୍ୟବହାର ପରିଦୃଷ୍ଟ ହେଉ ନ ଥାଏ, ତେବେ ସେ ଦୋଷ ଜନନୀଙ୍କର ନୁହେଁ, ତାହା ସମାଜର । କାରଣ ହିନ୍ଦୁଶାସ୍ତ୍ରରେ ସ୍ପଷ୍ଟ ଲେଖାଅଛି, "କନ୍ୟାପ୍ୟେବଂ ପାଳନୀୟା ଶିକ୍ଷଣୀୟାତିଯତ୍ନତଃ ।" କୌଣସି ସ୍ତ୍ରୀଲୋକ ବିଶେଷତଃ ମାତୃପଦଧାରିଣୀ ଯଦି ଅଶିକ୍ଷିତାଙ୍କ ପରି ଆଚରଣ କରେ, ତେବେ ସେ ଦୋଷ ତାଙ୍କର ନୁହେଁ—ସମାଜ ସେଥିପାଇଁ ସମ୍ପୂର୍ଣ୍ଣ ଦାୟୀ । ଅବଶ୍ୟ ଜନନୀବିଷୟରେ ଲେଖିବାକୁ ଯାଇ ଆମ୍ଭମାନଙ୍କୁ ଅଧିକାଂଶସ୍ଥଳରେ ଆଦର୍ଶ ଜନନୀଙ୍କୁ ମାନସଚକ୍ଷୁ ସମ୍ମୁଖରେ ରଖିବାକୁ ହୋଇଅଛି ।

ପୁତ୍ର ବିଦ୍ୟାଳୟର ବିଦ୍ୟାଶିକ୍ଷା ସମାପ୍ତ କରି କାମିନୀ ଓ କାଞ୍ଚନ ସେବିତ ସଂସାରକ୍ଷେତ୍ରରେ ପ୍ରବେଶ କରେ । ଯୌବନର ଉନ୍ମାଦନା କେହି କେହି ସହ୍ୟ କରି ପାରନ୍ତି, ପୁଣି କାହାରି କାହାରି ପକ୍ଷରେ ଅସହ୍ୟ ହୁଏ । ଶେଷୋକ୍ତ ବ୍ୟକ୍ତିମାନେ କାମିନୀମନ୍ତ୍ରଣାମୁଗ୍ଧ ହୋଇ ମାତାଙ୍କ ପ୍ରତି ଅତ୍ୟାଚାର ଆରମ୍ଭ କରନ୍ତି । ପୂର୍ବେ କହିଅଛୁଁ ଯେ, ଦେବୀକଳ୍ପା ମାତା ଅମ୍ଳାନବଦନରେ ସେ ସମସ୍ତ ଅତ୍ୟାଚାର ସହ୍ୟ କରନ୍ତି; ଅଧିକନ୍ତୁ ପୁତ୍ରର ସେହି ଦୁଷ୍କାର୍ଯ୍ୟ ପାଇଁ ଯେପରି ଅମଙ୍ଗଳ ନ ହୁଏ ସେଥିପାଇଁ ମଙ୍ଗଳମୟ ଈଶ୍ୱରଙ୍କୁ ଜଣାଉଥାନ୍ତି । ସ୍ଥଳବିଶେଷରେ ପୁତ୍ର ଆପଣାର ଅଚିରସ୍ଥାୟୀ ପୁତ୍ରକନ୍ୟା ଓ ଧନଜନ ପରିବେଷ୍ଟିତ ହୋଇ ମାତାଙ୍କୁ ପୃଥକ୍ କରିଦିଏ । ମାତା ଦୂରରେ ଥାଇ ପୁତ୍ରର ଶୁଭସମ୍ବାଦର ଅପେକ୍ଷା କରୁଥାନ୍ତି । ପୋଡ଼ା ପେଟର ଚିନ୍ତାଠାରୁ ପୁତ୍ରର ଶୁଭଚିନ୍ତା ବଳିଯାଏ ! ଅର୍ଥ-ସମ୍ପର୍କଶୂନ୍ୟ ପୁତ୍ରର ମଙ୍ଗଳସମାଚାର ପାଇ ମାତା ଆପଣାକୁ ଧନ୍ୟ ମନେ କରନ୍ତି । ମୁହଁରେ ଏକମାତ୍ର କଥା — ମୋର ପଇସା କଉଡ଼ି କ'ଣ ହେବ ! ସେ ( ପୁତ୍ର ) ଯେଉଁଠାରେ ଅଛି ଖାଇପିଇ ସୁଖରେ ଥାଉ; ପ୍ରଭୁ ତାହାକୁ ଦଣ୍ଡ ଘୋଡ଼ାଇ ସକଳ ବିପଦରୁ ରକ୍ଷା କରନ୍ତୁ । ଅହୋ ଏପରି ହୃଦୟ,

ଏପରି ପ୍ରାଣ, ଏପରି ମନ କି ପୃଥିବୀରେ ଅନ୍ୟଠାରେ ଦେଖାଯାଏ ? ମୋହମୁଗ୍ଧ ଚିତ୍ତ ଯାହା କହୁ, ନିର୍ମଳହୃଦୟର ଉତ୍ତର 'ନା'—ଏପରି ହୃଦୟ ଗୋଟିଏ ବ୍ୟତୀତ ଯୋଡ଼ିଏ ସୃଷ୍ଟିରେ ନାହିଁ । ହୃଦୟବିହାରୀ ହରିଙ୍କର ନିର୍ମଳ ସ୍ନେହର ଆଦର୍ଶରୂପେ ଏକମାତ୍ର ମାତୃସ୍ନେହର ସୃଷ୍ଟି । ପୁତ୍ର ଯେଉଁଠାରେ ଥାଉ, ଜନନୀଙ୍କ ପକ୍ଷରୁ ବା ନ ପକ୍ଷରୁ, ପୁତ୍ରର କୌଣସି ଅଶୁଭ ସମ୍ବାଦ ଶୁଣିବାମାତ୍ରକେ ମାତା ପୁତ୍ରର ଆଦର ଅଭ୍ୟର୍ଥନାର ଅପେକ୍ଷା ନ ରଖି ପୁତ୍ରର ସମସ୍ତ ଦୋଷ ମୁହୂର୍ତ୍ତକେ ଭୁଲିଯାଇ ତାହାର ସାହାଯ୍ୟାର୍ଥ ତାହା ନିକଟରେ ଉପସ୍ଥିତ ହୁଅନ୍ତି । ପୁତ୍ର ତାହା ଦେଖି ବିସ୍ମିତ ହୁଏ, କିନ୍ତୁ ପୁଣି ମୋହମୁଗ୍ଧ ହୋଇ ମାତୃସ୍ନେହ ବିସ୍ମୃତ ହୁଏ । ଦେଖୁଁ ଦେଖୁଁ ପୁତ୍ରର ପୁଣି ସନ୍ତାନସନ୍ତତି ହୁଅନ୍ତି ଏବଂ ପୁତ୍ର ପକ୍ଷରେ ସଂସାର ଭାରାକ୍ରାନ୍ତ ବୋଧ ହୁଏ । ସେ ଭାର ସମ୍ଭାଳିବାପାଇଁ ଦାସ୍,ସୂତ ବା ଅନ୍ୟ ପରିଜନଙ୍କର ଶକ୍ତି କାହିଁ ? ମାତା ସେତେବେଳେ ପୁତ୍ରଗୃହରେ ଦାସୀପରି ରହି ନାତି ନାତୁଣୀଙ୍କ ସେବାରେ ନିଯୁକ୍ତ ହୁଅନ୍ତି । ଏକମାତ୍ର ଉଦ୍ଦେଶ୍ୟ କୌଣସି-ରୂପେ ମୋର ପୁତ୍ରର ସଂସାରଭାର ଲଘୁ ହୋଇଯାଉ । ସ୍ଥଳେ ସ୍ଥଳେ ପୁତ୍ର ବା ପୁତ୍ରବଧୂଙ୍କଠାରୁ ପୂଜା ପାଇବା ତେଣିକି ଥାଉ, ଅଲକ୍ଷଣୀ ପୁତ୍ରବଧୂଙ୍କ ନିକଟରୁ ନାନା ଭତ୍ସନା ମାତାଙ୍କୁ ସହ୍ୟ କରିବାକୁ ହୁଏ । ମାତା ପୁତ୍ରର ଶୈଶବାବସ୍ଥାରେ ତାହାର ବିଷ୍ଠା ମୂତକୁ ଯେପରି ବିଷ୍ଠା ମୂତ୍ର ଜ୍ଞାନ କରି ନ ଥିଲେ; ବର୍ତ୍ତମାନ ପୁତ୍ର, ପୁତ୍ରବଧୂ ପ୍ରଭୃତି ସମସ୍ତଙ୍କ ଗାଳିମନ୍ଦକୁ ଗାଳିମନ୍ଦ ବୋଲି ମନେ କରନ୍ତି ନାହିଁ । ପୁତ୍ର କର୍ମସ୍ଥଳରୁ ଫେରିଲେ ଜାଣେ ଊର୍ଦ୍ଧ୍ୱତନକର୍ମଚାରୀଙ୍କ ପାଖରୁ ଗାଳିମନ୍ଦ ଖାଇଥିବ କିମ୍ବା ପୁତ୍ରର ଅନ୍ୟ କୌଣସି ଅନିଷ୍ଟ ହୋଇଥିବ ଭାବି ମାତା ପୁତ୍ରର ମୁଖଆଡ଼କୁ ଗୁହିଁ ରହନ୍ତି । ସ୍ତ୍ରୀର ହୃଦୟ ଏତେଦୂର ବ୍ୟାକୁଳ ହୋଇ ପାରେ ନାହିଁ; କାରଣ ସେଥିରେ ସ୍ୱାର୍ଥର ଗନ୍ଧ ଅଛି । ଏଥିରେ କୌଣସି ସ୍ତ୍ରୀଙ୍କ ପ୍ରତି ଦୋଷାରୋପ କରାଯାଉ ନାହିଁ । କାରଣ ମାନବପ୍ରକୃତି ଏହିପରି; ପୁଣି ସ୍ଥଳେ ସ୍ଥଳେ ଏହାର

ବ୍ୟତିକ୍ରମ ମଧ୍ୟ ଦେଖାଯାଇଥାଏ । ସେହି ସ୍ତ୍ରୀ ପୁଣି ମାତୃସ୍ଥାନୀୟା ହେଲେ ତାହାର ମନ ଅନ୍ୟରୂପ ହୋଇଯାଏ—ସ୍ୱାର୍ଥପରତାରୁ ନିଃସ୍ୱାର୍ଥପରତା ଆଡ଼କୁ ଚାଲିଆସେ ।

ପୁତ୍ରର ୫୦।୬୦ ବର୍ଷ ବୟସ ମଧ୍ୟରେ ଅନେକ ସ୍ଥଳରେ ମାତା ସ୍ୱର୍ଗାରୋହଣ କରିଥାନ୍ତି । କୌଣସି କୌଣସି ସ୍ଥଳରେ ପୁଣି ବିଧିର ଦୁର୍ଭାଗ୍ୟବଶତଃ ମାତାଙ୍କୁ ରଖି ପୁତ୍ର ସ୍ୱର୍ଗାରୋହଣ କରନ୍ତି । ଶେଷୋକ୍ତ ଘଟଣାରେ ଅନେକସ୍ଥଳରେ ମାତା ବାତୁଳପ୍ରାୟ ହୋଇଯାନ୍ତି ଏବଂ ଜୀବନ୍ମୃତାବସ୍ଥାରେ କାଳ ହରଣ କରନ୍ତି । କିନ୍ତୁ ପୁତ୍ରକୁ ରଖି ସମସ୍ତ ପୌତ୍ର ପୌତ୍ରୀଙ୍କୁ ପାଖରେ ବସାଇ ଆଖି ବୁଜି ପାରିଲେ ମାତା ତାଙ୍କ ନାରୀଜନ୍ମକୁ ସାର୍ଥକ ମନେ କରନ୍ତି । କଥା କହିବାର ଶକ୍ତି ଥିଲେ କହିଯାନ୍ତି—"ଶତ୍ରୁମିତ୍ରଙ୍କୁ ମିଳାଇ ସାବଧାନ ଥିବୁ । ମୁଁ ଚାଲିଲି, ପ୍ରଭୁ ତୋତେ ସବୁ ବିପଦରୁ ରକ୍ଷା କରିବେ ।" ଜଗଦୀଶ୍ୱର ଯାହାକୁ ମାତୃରୂପେ ପଠାଇ ଦେଇଥାନ୍ତି, ସେ ଚିରବିଦାୟ ନେବାବେଳେ ପୁତ୍ରକନ୍ୟାମାନଙ୍କୁ ପୁଣି ଜଗଦୀଶ୍ୱରଙ୍କଠାରେ ସମର୍ପଣ କରି ଚାଲିଯାନ୍ତି । ସ୍ଥୂଳଚକ୍ଷୁରେ ଏହିଠାରେ ମାତାଙ୍କର ପୁତ୍ରସକାଶେ ଉଦ୍‌ବେଗ, ଉତ୍କଣ୍ଠା ଓ କଷ୍ଟର ଶେଷ । ଯେଉଁ ପୁତ୍ର ମାତାଙ୍କର ଏ ଉଦ୍ବେଗ ଓ ଉତ୍କଣ୍ଠାର ଗୋଟାଏ ଧାରଣା କରି ନ ପାରେ, ସେ ଆମ୍ଭମାନଙ୍କ ମଙ୍ଗଳ ସକାଶେ ନିରନ୍ତର ଉତ୍କଣ୍ଠିତ ଜଗଦୀଶ୍ୱରଙ୍କର ଧାରଣା କରିବ କିପରି ?

## ଚତୁର୍ଥ ଅଧ୍ୟାୟ

### ମାନବେତର ଜୀବଙ୍କର ମାତୃସ୍ନେହ

ଜଗଦୀଶ୍ୱର ଯେ କେବଳ ମାନବଜାତି ମଧ୍ୟରେ ଏହି ମାତୃସ୍ନେହର ବୀଜ ରୋପଣ କରିଅଛନ୍ତି, ତାହା ନୁହେ; ଇତର ପ୍ରାଣୀମଧ୍ୟରେ ମୁଦ୍ଧା ଏହି ବୀଜ ସମ୍ୟକ୍ ରୂପେ ନିହିତ ଅଛି । ପୃଥିବୀରେ ପଶୁ, ପକ୍ଷୀ, କୀଟ, ପତଙ୍ଗ ପ୍ରଭୃତି ସମସ୍ତ ଜୀବର ଜନ୍ମମରଣ ଅଛି; ସୁତରାଂ ସମସ୍ତେ ମାତୃ-ଗର୍ଭରୁ ଜନ୍ମଗ୍ରହଣ କରୁଅଛନ୍ତି । ତରୁ ଲତା ମଧ୍ୟ ମାତୃଗର୍ଭରୁ ଜାତ ହେଉଅଛନ୍ତି । ତରୁଲତାମାନଙ୍କର ମାତୃସ୍ନେହ ଅଛି କି ନାହିଁ, ତାହା ଗଭୀର ଗବେଷଣା ପରେ ବୈଜ୍ଞାନିକମାନେ କହିବେ । ଆମ୍ଭେମାନେ ଇତର ଜୀବମଧ୍ୟରେ ଯେଉଁ ମାତୃସ୍ନେହର ଦୃଷ୍ଟାନ୍ତ ପ୍ରତ୍ୟକ୍ଷ କରୁ, ତାହା କ୍ଷୁଦ୍ରପରିମାଣରେ ଏଠାରେ ବର୍ଣ୍ଣନ କରିବୁଁ । ସମସ୍ତ ବର୍ଣ୍ଣନ କରିବାକୁ ଗଲେ ଖଣ୍ଡିଏ ବୃହତ୍ ପୁସ୍ତକ ହୋଇଯିବ ଏବଂ ସମସ୍ତ ବର୍ଣ୍ଣନା କରିବାର ସମୟ ବା ଶକ୍ତି ମଧ୍ୟ ଆମ୍ଭମାନଙ୍କର ନାହିଁ ।

ପ୍ରଥମରେ ଗାଭୀର ଦୃଷ୍ଟାନ୍ତ ଗ୍ରହଣ କରାଯାଉ । ବାଛୁରିଟିଏ ଜନ୍ମ ହେବା ପରେ ଅତି ଧୀର ସ୍ଥିର ଗାଭୀ ମଧ୍ୟ ଟିକିଏ ଅଧୀର ଅସ୍ଥିର ଦେଖା-ଯାଏ । ଗାଭୀ ସର୍ବଦା ନିଜର ବତ୍ସକୁ ଜଗିଥାଏ ଏବଂ କୌଣସି ବ୍ୟକ୍ତି ବା ଅନ୍ୟ ଜନ୍ତୁ ପାଖକୁ ଆସିଲେ ହୁଁ ହୁଁ ଶବ୍ଦ କରି ଘଉଡ଼ାଇଦେବାକୁ ଧାଇଁ ଆସେ । ଏହି ସମୟରେ ସେ ସର୍ବଦା ବତ୍ସଟିର ଦେହ ଚାଟୁଥାଏ ଏବଂ ଯେ କୌଣସି ପ୍ରକାରେ, ମଳ ଚାଟିଦେଇ ତାହା ଦେହକୁ ପରିଷ୍କାର କରିଦିଏ । ଯେଉଁମାନେ ଟିକିଏ ବିଶେଷଭାବରେ ଲକ୍ଷ୍ୟ କରିଅଛନ୍ତି, ସେମାନେ ଜାଣିଥିବେ ଯେ, ଗୋଦୋହନବେଳେ ବତ୍ସକୁ ଗାଭୀର ଗୋଡ଼ରେ ବାନ୍ଧିଦେଲେ ଗୋମାତା ଦୁଃଖିତ ହେବା ପରି ବୋଧ ହୁଏ ଏବଂ ବତ୍ସପ୍ରତି ଅଧିକତର ସ୍ନେହ ପ୍ରଦର୍ଶନ କରେ । ସେତେବେଳେ ବତ୍ସର ମୁହଁ ହସ୍ତ ପର୍ଯ୍ୟନ୍ତ ଜିହ୍ୱାଦ୍ୱାରା ଚାଟିଦେବାପାଇଁ କୁଣ୍ଠିତ ହୁଏ ନାହିଁ । ଆମ୍ଭମାନଙ୍କର

ଜନନୀ ଯେପରି ଆମ୍ଭମାନଙ୍କର ଶୈଶବକାଳରେ ମୂଢ଼ାବସ୍ଥାକୁ ମୂଢ଼ାବସ୍ଥା ମନେ କରନ୍ତି ନାହିଁ; କିନ୍ତୁ ଆମ୍ଭେମାନେ ଶୈଶବୋତ୍ତୀର୍ଣ୍ଣ ହେଲେ ସେସବୁ ପ୍ରତି ମାତାଙ୍କର ସ୍ୱତଃ ଘୃଣାର ଉଦ୍ରେକ ହୁଏ; ଗୋମାତା ମଧ୍ୟ ବୃଦ୍ଧିପ୍ରାପ୍ତ ବତ୍ସର ମୂଢ଼ାବସ୍ଥା ଜିହ୍ୱାଦ୍ୱାରା ସ୍ପର୍ଶ କରେ ନାହିଁ । ଦେଖୁଁ ଦେଖୁଁ ବତ୍ସ ଟିକିଏ ବୃଦ୍ଧିପ୍ରାପ୍ତ ହୋଇ ଏଣେ ତେଣେ ଚାଲିଗଲେ, ମାତା ତାହା ଆଡ଼କୁ ନିର୍ନିମେଷ ଦୃଷ୍ଟିରେ ଚାହିଁ ରହିଥାଏ ଏବଂ ବତ୍ସ ଚକ୍ଷୁର ଅନ୍ତସ୍ଥଳକୁ ଆସିଲେ ହମ୍ବାରଡ଼ି କରି ତାହାକୁ ପାଖକୁ ଡାକୁଥାଏ । ପୁଣି ଗାଈ ବତ୍ସକୁ ଛାଡ଼ି ଯେତେବେଳେ ଗୋଠକୁ ଯାଏ, ସେତେବେଳେ ମନ କେବଳ ବତ୍ସ ଉପରେ ପଡ଼ିଥାଏ ଏବଂ ଗୃହକୁ ଫେରିବା ସମୟରେ ଆନନ୍ଦରେ ହମ୍ବାରଡ଼ି କରି ବତ୍ସପାଖକୁ ଆସି ତାହାକୁ ଚାଟିବାକୁ ଆରମ୍ଭ କରେ । ଅନେକ ସମୟ ପରେ ମାତା ପୁତ୍ରକନ୍ୟାଙ୍କୁ ଦେଖି ଯେପରି ଆନନ୍ଦରେ ଗଦ୍‌ଗଦ ହୁଅନ୍ତି, ଗୋମାତା ମଧ୍ୟ ବତ୍ସକୁ ଦେଖି ସେପରି ଗଦ୍‌ଗଦ ହୁଏ । ଆହୁରି ମଧ୍ୟ ଦେଖାଯାଏ ଯେ, ଏହି ସମୟରେ ଗୋମାତା ବତ୍ସକୁ ଛାଡ଼ି ଗୋପାଳର ଭୟରେ ଗୋଠକୁ ବାଧ୍ୟ ହୋଇ ଯାଏ; କିନ୍ତୁ ଫେରିବା ବେଳେ ବତ୍ସକୁ ଦେଖିବା ଲାଗି ଦ୍ରୁତପଦରେ ଚାଲିଆସେ । ଅନେକ ସମୟରେ ବତ୍ସ ଦୃଷ୍ଟିର ଅନ୍ତରାଳରେ ଥିଲେ ମାତା ଓ ବତ୍ସ ଉଭୟେ ରଡ଼ି ପକାଉଥାନ୍ତି । ଅବଶ୍ୟ ସେ ରଡ଼ିର ଅର୍ଥ ଦୁର୍ବୋଧ, କିନ୍ତୁ ମାତା ପୁତ୍ରକୁ ଡାକିଲେ ପୁତ୍ର ଯେପରି ଯାଉଛି' ବା 'ଯିବି ନାହିଁ' ଉତ୍ତର ଦିଏ, ଏ ରଡ଼ି ମଧ୍ୟ ତଦ୍ରୂପ କୌଣସି ଅର୍ଥବ୍ୟଞ୍ଜକ ବୋଲି ମନେ ହୁଏ । ଯାହା ହେଉ; ଯେଉଁମାନେ ଗୋମାତା ନିକଟରେ ବତ୍ସର ନାନାବିଧ କ୍ରୀଡ଼ା କୌତୁକ, ଦୌଡ଼ାଦୌଡ଼ି, ଦୁଗ୍ଧଧାରରେ ଧାଇଁବା ଏବଂ ଗୋମାତାର ସେଗୁଡ଼ିକ ହର୍ଷବିସ୍ଫାରିତ ନୟନରେ ଦେଖିବା ପର୍ଯ୍ୟବେକ୍ଷଣ କରିଅଛନ୍ତି, ସେମାନେ ପଶୁମାନଙ୍କ ମାତୃସ୍ନେହର ସାମାନ୍ୟ ଆଭାସ ପାଇଥିବେ ।

ମାର୍ଜାରୀର ମାତୃସ୍ନେହ ମଧ୍ୟ ଅନେକ ପରିମାଣରେ ପୂର୍ବବତ୍ । ମାର୍ଜାରୀ ଶାବକ ପ୍ରସବ କଲେ ହିଁ ଏ ଭୟାକ୍ରାନ୍ତ ହୋଇପଡ଼େ—ଏକମାତ୍ର ଭୟ—ମୋର ପିଲାଙ୍କ ପ୍ରତି କେହି ଅନିଷ୍ଟାଚରଣ କରିବ ପରା ! ସେହି ଭୟରେ ସର୍ବଦା ସନ୍ଦିଗ୍ଧଚିତ୍ତରେ ସେ ନିଜର ଶାବକମାନଙ୍କୁ ଦାନ୍ତରେ କାମୁଡ଼ି ନିରାପଦ ସ୍ଥାନମାନଙ୍କୁ ନେଇ ଯାଉଥାଏ । ସେ ଯେଉଁ ସ୍ଥାନକୁ ନିରାପଦ ଭାବି ଶାବକମାନଙ୍କୁ ନେଇ ଆସିଅଛି, ସେ ସ୍ଥାନରେ ଯଦି ଆପଦର ସାମାନ୍ୟ ମାତ୍ର ଆଶଙ୍କା ଦେଖେ, ତେବେ ଅନ୍ୟ ଗୋଟିଏ ଆପାତ ନିରାପଦ ସ୍ଥାନକୁ ନେଇଯାଇ ନିଶ୍ଚିନ୍ତ ହୁଏ । ମାର୍ଜାରୀ ଶାବକକୁ ଘରୁ ବାହାରକୁ ଆସିବା ପାଇଁ ଆଦୌ ଇଚ୍ଛା କରେ ନାହିଁ । କେତେବେଳେ ବାହାରେ ଆସି ବୁଲୁଥିଲେ ଯଦି କୌଣସି ବ୍ୟକ୍ତିଙ୍କୁ ତାହାର ଶାବକ ଆଡ଼କୁ ଯିବାର ଦେଖେ, ତେବେ ତତ୍କ୍ଷଣାତ୍ ବିପଦର ଆଶଙ୍କା କରି ଦ୍ରୁତପଦରେ ସେମାନଙ୍କର ନିକଟବର୍ତ୍ତୀ ହୁଏ ଏବଂ କୌଣସି ବ୍ୟକ୍ତି ସେଠାରେ ଠିଆ ହେଲେ ସେ ଶାବକମାନଙ୍କ ନିକଟରୁ ପଲକପାତଶୂନ୍ୟ ଚକ୍ଷୁରେ ସେ ବ୍ୟକ୍ତି ଆଡ଼କୁ ଅନାଇ ରହିଥାଏ । ସେ କଟାକ୍ଷପାତରୁ ମନେ ହୁଏ, ବାକ୍ଶକ୍ତିବିହୀନ ମାର୍ଜାରମାତା ସତେ ଯେପରି ଆଗନ୍ତୁକଙ୍କୁ ସେଠାରୁ ଚାଲିଯିବାପାଇଁ ଅନୁରୋଧ କରେ । ଆହା ! ଯେଉଁମାନେ ପୂ ମାର୍ଜାରମାତାର ଗାମ୍ଭୀର୍ଯ୍ୟ ପର୍ଯ୍ୟବେକ୍ଷଣ କରିଅଛନ୍ତି, ସେମାନେ ମୁଗ୍ଧ ନ ହୋଇ ରହି ପାରି ନାହାନ୍ତି । ଯେତେବେଳେ ମାର୍ଜାର ତାହାର ଲାଙ୍ଗୁଳକୁ କ୍ରୀଡ଼ାସାମଗ୍ରୀରୂପେ ହଲାଉଥାଏ ଏବଂ ଶାବକ ସେ ଲାଙ୍ଗୁଳଟି ନେଇ କ୍ରୀଡ଼ା କରୁଥାଏ, ସେତେବେଳେ କି ଗମ୍ଭୀର ଭାବରେ ମାର୍ଜାରମାତା ଶାବକର କ୍ରୀଡ଼ା ସମ୍ଭୋଗ କରେ । ମାର୍ଜାର ପୁଣି ସମୟ ସମୟରେ ନିଜେ ଶାବକ ସହିତ କ୍ରୀଡ଼ାରେ ମତ୍ତ ହୁଏ । ମନୁଷ୍ୟଠାରୁ ଇତର ପ୍ରାଣୀ ପର୍ଯ୍ୟନ୍ତ ସମସ୍ତଙ୍କ ଶିଶୁ ମାତାଙ୍କ ସମ୍ମୁଖରେ ଯେପରି ପ୍ରଫୁଲ୍ଲ ପ୍ରାଣରେ କ୍ରୀଡ଼ା କରନ୍ତି, ଅନ୍ୟାନ୍ୟ ଆତ୍ମୀୟ ନିକଟରେ ତ ସେପରି ପ୍ରାଣ ଖୋଲି କ୍ରୀଡ଼ା କରନ୍ତି ନାହିଁ ।

ସମସ୍ତେ ବାନରଶାବକଙ୍କୁ ମଧ୍ୟ ଲକ୍ଷ୍ୟ କରିଥିବେ । ମାର୍ଜାରୀ ତାହାର ଶାବକକୁ ଦାନ୍ତରେ କାମୁଡ଼ି ଏଣେ ତେଣେ ବୁଲୁଥାଏ, ସେ ତାହାର ଶାବକକୁ ଛାଡ଼େ ନାହିଁ, କିନ୍ତୁ ବାନରୀର ଶାବକ ତାହାର ମାଆକୁ ଭିଡ଼ାଇ ଧରିଥାଏ, ସହଜରେ ଛାଡ଼େ ନାହିଁ । ଏ ଟିକକ ସାମାନ୍ୟ ପାର୍ଥକ୍ୟ ମାତ୍ର । ବାନରୀ ମଧ୍ୟ ଶାବକ ପ୍ରସବ କଲା ମାତ୍ରକେ ତାହାକୁ ନିରାପଦରେ ରଖିବା ପାଇଁ ସର୍ବଦା ସଚେଷ୍ଟ ହୁଏ ଏବଂ ବାନରର ଦୌରାତ୍ମ୍ୟରୁ ତାହାକୁ ରକ୍ଷା କରିବା ଉଦ୍ଦେଶ୍ୟରେ ସଶାବକ ଏକଶାଖାରୁ ଶାଖାନ୍ତରକୁ ଡେଇଁ ଡେଇଁ ବୁଲୁଥାଏ । ଅନେକେ ଲକ୍ଷ୍ୟ କରିଥିବେ ଯେ କୌଣସି କାରଣରୁ ଶାବକର ମୃତ୍ୟୁ ହେଲେ ମନୁଷ୍ୟ, ଗାଈ ଏବଂ ମାର୍ଜାରୀ ପରି ବାନରୀ ମଧ୍ୟ କାନ୍ଦୁଥାଏ । କାନ୍ଦିବା ବେଳେ ପ୍ରାୟ ଏ ସମସ୍ତଙ୍କ ଚକ୍ଷୁରୁ ଅଶ୍ରୁପାତ ହୁଏ । ପଶୁମାନଙ୍କର ସେହି ଅଶ୍ରୁପାତ ଦେଖି ସହାନୁଭୂତିଶୀଳ ମାନବ ମଧ୍ୟ ଅନେକ ସମୟରେ କାନ୍ଦି ପକାଏ । ଅନେକେ ଲକ୍ଷ୍ୟ କରିଥିବେ ଯେ, ବାନରୀ ଶାବକର ମୃତ୍ୟୁରେ ଏତେ ଅଧୀର ହୋଇପଡ଼େ ଯେ, ବିଷଣ୍ଣ ବଦନରେ ଗୋଟିଏ ସ୍ଥାନରେ ନିଷ୍ପନ୍ଦଭାବରେ ବହୁକ୍ଷଣ ବସି ରହେ ଏବଂ ଖାଦ୍ୟାହାର ଚେଷ୍ଟା କରେ ନାହିଁ । ପୁତ୍ରବିରହ-ଶୋକରେ ଦେହୀ ମାତ୍ରେ ଯେ ଅଧୀର ହୁଅନ୍ତି ତାହା ଇତର ପ୍ରାଣିମାନଙ୍କ ମଧ୍ୟରେ ସୁଦ୍ଧା ଲକ୍ଷିତ ହୁଏ ।

ଯେଉଁମାନେ ବାଘୁଣୀର ଅପତ୍ୟବାତ୍ସଲ୍ୟ ଦେଖିବାର ସୁଯୋଗ ପାଇଅଛନ୍ତି, ସେମାନେ ମଧ୍ୟ ମୁଗ୍ଧ ହୋଇଅଛନ୍ତି । ସମ୍ରାଜ୍ଞୀ ପ୍ରଜାମାନଙ୍କ ନିକଟରେ ପୂଜନୀୟା ଓ ବନ୍ଦନୀୟା; କିନ୍ତୁ ଆପଣାର ସନ୍ତାନମାନଙ୍କ ନିକଟରେ ଯେପରି ସ୍ନେହମୟୀ ମାତା, ସେହିପରି ବାଘୁଣୀ ଅନ୍ୟାନ୍ୟ ଜନ୍ତୁ-ମାନଙ୍କ ନିକଟରେ ଭୟଙ୍କରୀ, କିନ୍ତୁ ନିଜର ଶାବକମାନଙ୍କ ନିକଟରେ ପ୍ରେମ-ପୀୟୂଷ-ଧାରିଣୀ ସ୍ନେହମୟୀ ଜନନୀ । ବାଘୁଣୀର ଶାବକ ନୋହିବାପାଏ ସେ ସାଧାରଣ ଭାବରେ ବିଚରଣ କରେ, କିନ୍ତୁ ପ୍ରସୂତ

ବାଘୁଣୀ ଭୀଷଣମୂର୍ତ୍ତି ଧାରଣ କରି ସର୍ବଦା ଶାବକମାନଙ୍କର ରକ୍ଷଣାବେକ୍ଷଣ କରେ । ସେତେବେଳେ ସେ ସନ୍ତାନପାଳନରେ ଏପରି ଅଭିଭୂତ ହୋଇପାଏ ଯେ ତାହାଠାରୁ ଶତଗୁଣ ବଳୀୟାନ୍ ଶାବକ-ଆକ୍ରମଣକାରୀ ଜୀବମାନଙ୍କୁ ମଧ୍ୟ ଦୂରରେ ରଖିବାପାଇଁ ପ୍ରାଣର ଆଶା ପରିତ୍ୟାଗ କରି ଆକ୍ରମଣକାରୀ ସହିତ ଯୁଦ୍ଧରେ ପ୍ରବୃତ୍ତ ହୁଏ । ଯେଉଁମାନେ ବାଘୁଣୀର ସେ ଭୀମରୂପ ଦର୍ଶନ କରିଅଛନ୍ତି, ସେମାନେ ମୂର୍ତ୍ତିମତୀ ଭୀତିକୁ ପ୍ରତ୍ୟକ୍ଷ କରିଅଛନ୍ତି କହିଲେ ଚଳେ । ଦ୍ରଷ୍ଟାର ହୃଦୟରେ ସେ ଭୀଷଣତାର ସ୍ମୃତି ମଧ୍ୟ ଅନେକ ସମୟରେ ଭୟସଞ୍ଚାର କରେ । ସେଥିନିମିତ୍ତ କୌଣସି ବନରେ ବାଘୁଣୀ ଶାବକ ପ୍ରସବ କରିଥିଲେ, ବଣୁଆମାନେ ସେବାଟେ ଯିବାପାଇଁ ବାଟୋଇମାନଙ୍କୁ ନିଷେଧ କରନ୍ତି । କାରଣ ବାଘୁଣୀ ସେତେବେଳେ ଯେ କାହାରିକି ଦେଖିଲେ ଶାବକର ଅଶୁଭାଶଙ୍କା କରି ପ୍ରାଣର ମମତା ଛାଡ଼ି ଦେଇ ତାହାକୁ ଧ୍ୱଂସ କରିବାକୁ ପ୍ରବୃତ୍ତ ହୁଏ । ଯେ ହୃଦୟ ଅପର ପକ୍ଷରେ ପୈଶାଚିକ ସେହି ହୃଦୟ ପୁଣି ସନ୍ତାନ ନିମିତ୍ତ ପ୍ରେମାମୃତପୂର୍ଣ୍ଣ । ଏଥି ନିମିତ୍ତ ଆମ୍ଭେମାନେ କହୁଥିଲୁଁ ଯେ, ମାତା ସ୍ରଷ୍ଟାଙ୍କର ଏକ ଅପୂର୍ବ ସୃଷ୍ଟି ।

ପଶୁମାନଙ୍କ କଥା ଏଠାରେ ଥାଉ । ବର୍ତ୍ତମାନ ପକ୍ଷୀମାନଙ୍କ କଥା ଦେଖାଯାଉ । ଆମ୍ଭେମାନେ ସର୍ବଦା ପ୍ରତ୍ୟକ୍ଷ କରୁଅଛନ୍ତି, ପକ୍ଷିମାତା କିପରି ବହୁ ଯତ୍ନରେ ନୀଡ଼ ନିର୍ମାଣ କରି ଶାବକକୁ ତାହା ମଧ୍ୟରେ ନିରାପଦରେ ରକ୍ଷା କରେ ଏବଂ ତାହାର ଆହାର ଅନୁସନ୍ଧାନରେ ଏଣେ ତେଣେ ବୁଲୁଥାଏ । ସେ ଯେତେବେଳେ କୌଣସି ଭଲ ଖାଦ୍ୟ ପାଏ, ସେତେବେଳେ ତାହାକୁ ଆପଣାର ଥଣ୍ଟରେ ଧରି ବ୍ୟାକୁଳ ପ୍ରାଣରେ ଉଡ଼ିଉଡ଼ି ଶାବକ ନିକଟରେ ଉପସ୍ଥିତ ହୁଏ । ନିଜ ମୁଖରେ ଧରିଥିବା ଏହି ଆହାର ସେତେବେଳେ ସେ ନୀଡ଼ରେ ଶାବକମୁଖରେ ପୂରାଇ ଦେଉଥାଏ, ସେତେବେଳେ ଜନନୀର ସନ୍ତାନବାତ୍ସଲ୍ୟ ଦେଖି କାହାର ହୃଦୟ ବିଗଳିତ

ନ ହୁଏ ? ଶାବକର ସେଥିରେ ପେଟ ପୂରିଲା ନାହିଁ ବୋଲି ଜାଣି
ପାରିଲେ ପକ୍ଷିମାତା ପୁଣି ଉଡ଼ିଯାଏ ଏବଂ ଖାଦ୍ୟ ସଂଗ୍ରହ କରି ଶାବକ
ନିକଟକୁ ଉଡ଼ିଆସି ପୂର୍ବବତ୍ ଖାଇବାକୁ ଦିଏ । ନିରାଶ୍ରୟ ଶାବକର ସାମାନ୍ୟ
ଚିତ୍କାର କର୍ଣ୍ଣରେ ପଡ଼ିଲେ ପକ୍ଷିମାତା ଅତିଶୀଘ୍ର ବସାକୁ ଫେରିଆସି
ଶାବକକୁ ପକ୍ଷରେ ଘୋଡ଼ାଇ ବସେ ଏବଂ ଏହିରୂପେ ତାହାର ସାନ୍ତ୍ୱନା
ବିଧାନ କରେ ।

ଏ ତ ଗଲା ସ୍ଥଳଜନ୍ତୁ କଥା । ପୁଣି ଜଳଜନ୍ତୁମାନଙ୍କ ମଧ୍ୟରେ ସୁଦ୍ଧା
ଅବିକଳ ପୂର୍ବବତ୍ ମାତୃସ୍ନେହ ବିଦ୍ୟମାନ । କୁମ୍ଭୀର ଏଡ଼େ ଭୀଷଣ ଜୀବ,
କିନ୍ତୁ ଯେତେବେଳେ ସିକତାମୟ ନଦୀତୀରରେ ବା ଅତଳ ନଦୀଗର୍ଭରେ
ଶାବକମାନେ ତାହା ସହିତ କ୍ରୀଡ଼ାମତ୍ତ ହୁଅନ୍ତି, ସେ ଦୃଶ୍ୟ ବଡ଼
ମନୋହର ହୁଏ; ପୁଣି ଯେଉଁମାନେ ମତ୍ସ୍ୟମାତା ଓ ତାହାର ଶାବକମାନଙ୍କ
ମଧ୍ୟରେ କ୍ରୀଡ଼ା ସନ୍ଦର୍ଶନ କରିଅଛନ୍ତି, ସେମାନେ ମୁଗ୍ଧ ହୋଇଅଛନ୍ତି ।
ମତ୍ସ୍ୟମାତା ସମସ୍ତ ସମୟରେ କେନ୍ଦ୍ରସ୍ଥଳରେ ଥାଏ ଏବଂ ଶାବକଗୁଡ଼ିକ
ବୃତ୍ତାକାରରେ ତାହାକୁ ଘେରି ଜଳକ୍ରୀଡ଼ା କରୁଥାନ୍ତି । ସେ ଦୃଶ୍ୟ
ଦେଖିଲେ ମତ୍ସ୍ୟମାନଙ୍କ ମଧ୍ୟରେ ଗୋଟିଏ ଶୃଙ୍ଖଳା ଅଛି ବୋଲି ମନେ
ହୁଏ । କୌଣସି ବିପଦର ଅଶଙ୍କା ଦେଖିଲେ, ମତ୍ସ୍ୟମାତା ଏପରି
ବେଗରେ ସସନ୍ତାନ ଜଳଗର୍ଭରେ ପ୍ରବେଶ କରେ, ଯେ, ଆଉ
ଦେଖାଯାଏ ନାହିଁ; ସୁତରାଂ ଅପତ୍ୟସ୍ନେହ ଜଳ, ସ୍ଥଳ ଗିରି ବନ ଓ
ଆକାଶ କେଉଁଠାରେ ଯେ ନାହିଁ, ତାହା ନୁହେ । ବୋଧ ହୁଏ ଏ ସ୍ନେହର
ଅଭାବରେ ସୃଷ୍ଟି ଅଚଳ ହୁଅନ୍ତା ।

କୀଟପତଙ୍ଗମାନଙ୍କ ମଧ୍ୟରେ ଏହି ଅପତ୍ୟସ୍ନେହ ପୂର୍ଣ୍ଣଭାବରେ
ବିଦ୍ୟମାନ । ଯେଉଁମାନେ ମଧୁମକ୍ଷିକାମାନଙ୍କ ବୃତ୍ତାନ୍ତ ଉତ୍ତମରୂପେ
ଜାଣନ୍ତି, ସେମାନଙ୍କୁ ଅବିଦିତ ନାହିଁ ଯେ, ନିରାଶ୍ରୟ ଅବସ୍ଥା ଥିବାଯାଏ
ମକ୍ଷିକାମାତା ନିଜର ଶାବକକୁ କିପରି ନିରାପଦ ସ୍ଥାନରେ ରକ୍ଷା କରେ

ଏବଂ ତତ୍ପରେ ସେମାନଙ୍କୁ ମଧୁ ଅପହରଣ କରିବାକୁ ଛାଡ଼ିଦିଏ । ସମସ୍ତେ ଯେଉଁ ମଧୁ ଆଣି ମଧୁକୋଷରେ ସଞ୍ଚୟ କରନ୍ତି, ସେଥିରୁ ସେ ସେମାନଙ୍କୁ ଖାଇବାକୁ ଦିଏ । ଭୁଇଁ ବା ପିମ୍ପୁଡ଼ିମାନଙ୍କର ମଧ୍ୟ ନିଜଶିଶୁ ଶାବକ ନିମିତ୍ତ ପୂର୍ବବତ୍ ବିଧାନ । ଆମ୍ଭେମାନେ ଯେତେ ଅଧିକ ଗବେଷଣା କରିବୁଁ, ସେତେ ଅଧିକ ସର୍ବପ୍ରାଣୀ ମଧ୍ୟରେ ଏହି ଅପତ୍ୟସ୍ନେହର ଖେଳ ଦେଖି ବିଶୁଦ୍ଧାନନ୍ଦ ଲାଭ କରି ପାରିବୁଁ ।

ତରୁଲତାମାନଙ୍କର ଯେ ଅନୁଭବଶକ୍ତି ଅଛି, ଏହା ସର୍ବତୋଭାବେ ପ୍ରମାଣିତ ହୋଇଅଛି । ତେବେ ସେମାନଙ୍କର ଅପତ୍ୟସ୍ନେହ କିପରିଭାବରେ ପ୍ରକାଶ ପାଏ, ତାହା ବହୁ ଅନୁସନ୍ଧାନ ସାପେକ୍ଷ । ଯେଉଁମାନେ ଅଧ୍ୟାପକ ଜଗଦୀଶଚନ୍ଦ୍ର ବସୁଙ୍କ ବୈଜ୍ଞାନିକ ଅନୁସନ୍ଧାନର ତତ୍ତ୍ୱ ଜାଣନ୍ତି, ସେମାନେ ଏ ବିଷୟରେ ଅନେକ କଥା କହି ପାରିବେ । ତେବେ ବୃହତ୍ କଦଳୀ ବୃକ୍ଷର ଚାରିଆଡ଼େ ଶିଶୁ ବୃକ୍ଷଗୁଡ଼ିକୁ ପ୍ରତ୍ୟକ୍ଷ କଲେ ଅନେକ ସମୟରେ ଉକ୍ତ ବୃକ୍ଷର ଅପତ୍ୟବାତ୍ସଲ୍ୟ ଅନୁମାନ କରିନେବାକୁ ହୁଏ । କୌଣସି ବୃକ୍ଷର ବୀଜମାନ ତଳେ ପଡ଼ି ଯେତେବେଳେ କ୍ଷୁଦ୍ର କ୍ଷୁଦ୍ର ବୃକ୍ଷରୂପେ ପରିଣତ ହୁଏ, ସେତେବେଳେ ବୃହତ୍ ବୃକ୍ଷର ଛାୟାରେ ସେହି କ୍ଷୁଦ୍ର ବୃକ୍ଷମାନଙ୍କୁ ଦେଖି ମାତାଙ୍କ କୋଳରେ ପୁତ୍ରକନ୍ୟାର ଆଶ୍ରୟଗ୍ରହଣର ଚିତ୍ର ମନରେ ଅଙ୍କିତ ହୁଏ । ଯାହାହେଉ, ଏହି ତରୁଲତାମାନଙ୍କ ଅପତ୍ୟସ୍ନେହ ବିଷୟକ ଗବେଷଣା ବୈଜ୍ଞାନିକମାନଙ୍କୁ ଛାଡ଼ିଦେଇ ଆମ୍ଭେମାନେ ଏତିକି ଜାଣି ନିଶ୍ଚିନ୍ତ ରହିପାରୁଁ ଯେ, ଜଗଜ୍ଜନନୀ ଓତପ୍ରୋତ ଭାବରେ ସମସ୍ତ ଅସ୍ତିତ୍ୱବିଶିଷ୍ଟ ପଦାର୍ଥ ମଧ୍ୟରେ ମାତୃରୂପେ ବିରାଜିତ ରହି ସନ୍ତାନମାନଙ୍କୁ ରକ୍ଷଣାବେକ୍ଷଣ କରୁଅଛନ୍ତି ।

# ପଞ୍ଚମ ଅଧ୍ୟାୟ

## ( ଜନନୀ ପ୍ରଥମ ଶିକ୍ଷୟିତ୍ରୀ )

"One good mother is worth a hundred school masters" "A mother' face is the child's first lesson book".

ଜନନୀ ଆମ୍ଭମାନଙ୍କର ପ୍ରଥମ ଶିକ୍ଷାଗୁରୁ । ଆମ୍ଭେମାନେ ସେହି ସ୍ୱର୍ଗୀୟ ମୁଖଆଡ଼କୁ ଶୈଶବକାଳରୁ ଅନାଇବାରେ ଅଭ୍ୟସ୍ତ । ସେ ମୁଖରୁ ଯେ କଥା ଉଚ୍ଚାରିତ ହୁଏ, ତାହା ଆମ୍ଭମାନଙ୍କ ପକ୍ଷରେ ଅମୃତ । ଶିଶୁ ଅନ୍ୟ ସମସ୍ତଙ୍କ ପାଖରେ ଏକ ସ୍ୱରରେ କ୍ରନ୍ଦନ କରୁଅଛି, କାହାର ମନା ମାନୁ ନାହିଁ, କାହାର କଥା ଶୁଣୁ ନାହିଁ, କାହାର ସାନ୍ତ୍ୱନା ନେଉ ନାହିଁ, କିନ୍ତୁ ସେହି ଅମୃତମୟୀ ବାଣୀର ଦୁଇଟା ଗୋଟାଏ ଶବ୍ଦ କର୍ଣ୍ଣକୁହରରେ ପଡ଼ିଲା ମାତ୍ରକେ ଶିଶୁର କ୍ରନ୍ଦନ ବନ୍ଦ ହୋଇଯାଏ, ମନ ସ୍ୱର୍ଗ ଆଡ଼କୁ ଧାଇଁଯାଏ, ଦୁଃଖ ପରିବର୍ତ୍ତିରେ ଅପାର ସୁଖ ତାହାର ହୃଦୟକୁ ଅଧିକାର କରି ସେ ମୁଖାରବିନ୍ଦକୁ ପ୍ରଫୁଲ୍ଲ କରିଦିଏ । କେବଳ ମନୁଷ୍ୟ ପକ୍ଷରେ ଯେ ଏହା ସତ୍ୟ, ତାହା ନୁହେ, କୁକୁର ବା ବିଲେଇ ଛୁଆଙ୍କୁ ମଧ୍ୟ ଅଶାନ୍ତଭାବରେ କ୍ରନ୍ଦନ କରିବାର ଦେଖିଅଛୁ; ପୁଣି ଦେଖି-ଅଛୁ ଯେ, କୁକୁରଛୁଆ ମାଆର ରବ ଶୁଣି, ବିଲେଇଛୁଆ ତାର ମାଆର ମିଉଁ ମିଉଁ ଶବ୍ଦ ଶୁଣି ଶାନ୍ତ ହୋଇଅଛନ୍ତି ।

ପକ୍ଷୀ ଯେପରି ବହୁ ପରିଶ୍ରମ ସ୍ୱୀକାର କରି ତାହାର ଶାବକକୁ ଉଡ଼ିବାକୁ ଶିଖାଏ, ସିଂହ, ବ୍ୟାଘ୍ର ପ୍ରଭୃତି ପଶୁମାନେ ଯେପରି ବହୁ ଅଭ୍ୟାସରେ ନିଜ ନିଜ ଶାବକମାନଙ୍କୁ ଶିକାର କରିବାକୁ ଶିଖାନ୍ତି; ଆମ୍ଭ-ମାନଙ୍କର ଜନନୀ ମଧ୍ୟ ସେହିପରି ଆମ୍ଭମାନଙ୍କୁ ମାନବୋଚିତ ପ୍ରାଥମିକ ଶିକ୍ଷା ଦିଅନ୍ତି । ଆମ୍ଭମାନଙ୍କର ଅନେକ ଗୁରୁ ଅଛନ୍ତି ସତ୍ୟ, କିନ୍ତୁ ମାତା ଆଦିଗୁରୁ । ଏପରି କି 'ଏ ତୋର ବାପ' ବୋଲି ଚିହ୍ନାଇ ନ ଦେଲେ

ଶିଶୁ ଅପଣାର ପିତାଙ୍କୁ ମଧ୍ୟ ପିତା ବୋଲି ଡାକେ ନାହିଁ ବା 'ବାପା' ବୋଲି ଡାକେ ନାହିଁ । ଶିଶୁର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ଦେଖାଯାଏ ଯେ, ସେ ମା କଥାରେ ଯେତେ ଶ୍ରଦ୍ଧାବାନ୍, ଅନ୍ୟ କାହାର କଥାରେ ସେପରି ନୁହେ । ମା ଯାହା କହନ୍ତି, ସେ ତାହା ଉନ୍ମୁକ୍ତପ୍ରାଣରେ ଗ୍ରହଣ କରେ ଏବଂ ଆମରଣ ତାହା ଭୁଲି ପାରେ ନାହିଁ । ଏଥି ନିମିତ୍ତ ଇଂରାଜରେ କହନ୍ତି, "The first impression lasts the longest" ଅର୍ଥାତ୍ ଜୀବନର ପ୍ରଥମରେ ମନ ଉପରେ ଯେଉଁ ଦାଗ ପଡ଼େ, ତାହା ସୁଦୀର୍ଘକାଳ ପର୍ଯ୍ୟନ୍ତ ସ୍ଥାୟୀ ହୁଏ । ଆମ୍ଭେମାନେ ଜାଣୁ ଯେ, ସାର୍ ସୟଦ୍ ଅହମ୍ମଦ ଅତ୍ୟନ୍ତ ସ୍ୱଜାତିବତ୍ସଳ, ଭୃତ୍ୟମାନଙ୍କ ପ୍ରତି ଦୟାଳୁ ଏବଂ ସମଧିକ ଉନ୍ନତମନା ଥିଲେ । ସେ ତାହାଙ୍କର ଉତ୍ତର ଜୀବନରେ ସ୍ୱୀକାର କରି ଯାଇଅଛନ୍ତି ଯେ, ତାହାଙ୍କର ସମସ୍ତ ଉନ୍ନତିର ଏକମାତ୍ର କାରଣ ତାହାଙ୍କର ଜନନୀ । ଭୃତ୍ୟପ୍ରତି ଥରେ ନିର୍ଦ୍ଦୟାଚରଣ କରି ମାତାଙ୍କ ନିକଟରୁ ସୟଦ୍ ବାଲ୍ୟକାଳରେ ଯେଉଁ ତାଡ଼ନା ସହ୍ୟ କରିଥିଲେ, ଜୀବନରେ ଆଉ ସେ ତାଡ଼ନା ଭୁଲି ପାରିଲେ ନାହିଁ କିମ୍ବା ଭୃତ୍ୟମାନଙ୍କ ପ୍ରତି ଆଉ କେବେହେ ନିଷ୍ଠୁରାଚରଣ କରିବାପାଇଁ ତାଙ୍କର ମନ ବଳିଲା ନାହିଁ । ବିଖ୍ୟାତ ଚିତ୍ରକର Ben West କହିଅଛନ୍ତି, "Kiss from my mother made me a painter" ଅର୍ଥାତ୍ ମାଙ୍କ ଚୁମ୍ବନ ମୋତେ ଚିତ୍ରକର କରିଅଛି; ସୁତରାଂ ଏଠାରେ ମଧ୍ୟ ଦେଖାଯାଉଅଛି ଯେ, ଜନନୀ ସନ୍ତାନର ସମସ୍ତ ଉନ୍ନତିର ମୂଳ । ଜନନୀ ଯେ ସନ୍ତାନର ପ୍ରଧାନ ଶିକ୍ଷୟିତ୍ରୀ ଏ ବିଷୟରେ ସନ୍ଦେହ ନାହିଁ । ଆମ୍ଭେମାନେ ବାଳକମାନଙ୍କୁ ଦେଶର ଭବିଷ୍ୟତ୍ ଆଶା ଭରସାର ସ୍ଥଳ ବୋଲି କହୁଥାଉଁ; କିନ୍ତୁ ବାଳିକାମାନେ ମଧ୍ୟ ସେହିପରି ବା ତତୋଧିକ ଆଶା ଭରସାର ସ୍ଥଳ । ଜନନୀ ଶିକ୍ଷିତା ହେଲେ ଜାତିକର ଯେ କି ପରିମାଣରେ ଉପକାର ସାଧିତ ହୁଏ, ତାହା ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ

ପର୍ଯ୍ୟନ୍ତ ଦୃଷ୍ଟି ନିକ୍ଷେପ ନ କରି ବଙ୍ଗ ଓ ବୋମ୍ବାଇ ଅଞ୍ଚଳ ପ୍ରତି ଦୃଷ୍ଟି ନିକ୍ଷେପକଲେ ସହଜରେ ଜଣାଯିବ । ବର୍ତ୍ତମାନ ସ୍ତ୍ରୀଶିକ୍ଷାର ପ୍ରବର୍ତ୍ତନାହିଁ ଏକମାତ୍ର ମୋକ୍ଷସେତୁ । 'ସନ୍ତାନର ଭବିଷ୍ୟତ୍ ଯେଉଁମାନଙ୍କ ହସ୍ତରେ ନ୍ୟସ୍ତ, ସେମାନଙ୍କ ପ୍ରତି ଆମ୍ଭେମାନେ ଯେପରି ବ୍ୟବହାର କରୁଅଛୁଁ, ତାହା ଅନ୍ୟାନ୍ୟ ଉନ୍ନତ ଦେଶ ପକ୍ଷରେ ରୋମହର୍ଷଣ କାଣ୍ଡ କହିଲେ ଅତ୍ୟୁକ୍ତି ହେବନାହିଁ । ସେମାନଙ୍କପ୍ରତି ଅନାଚାର ଓ ଅତ୍ୟାଚାରରେ ଅଭ୍ୟସ୍ତ ଭାରତସନ୍ତାନ "ଉନ୍ନତି ଉନ୍ନତି"ବୋଲି ସଭାସମିତିରେ ଆଜୀବନ କୋଳାହଳ କଲେ ମଧ୍ୟ ଉନ୍ନତିର କୌଣସି ଆଶା ନାହିଁ । ଯେ ପର୍ଯ୍ୟନ୍ତ ନାରୀଜାତିଙ୍କୁ ସେମାନଙ୍କର ପ୍ରକୃତ ପ୍ରାପ୍ୟ ସମ୍ମାନ ପ୍ରଦତ୍ତ ହୋଇ ନାହିଁ, ସେ ପର୍ଯ୍ୟନ୍ତ ସନ୍ତାନସନ୍ତତିମାନଙ୍କ ଶିକ୍ଷା ଦୀକ୍ଷା କଥାର କଥା ମାତ୍ର—ପଣ୍ଡଶ୍ରମ ମାତ୍ର । ମୋର କ୍ଷୁଦ୍ର ଅଭିଜ୍ଞତାରେ ମୁଁ ଦେଖିଅଛି, ଯେଉଁ ପୁତ୍ରକନ୍ୟା ମାତାଙ୍କନିକଟରୁ ସଦୁପଦେଶ ପାଇ ନାହାନ୍ତି ବା ନିଜର ଜନନୀଠାରେ ଉନ୍ନତ ଜୀବନର ଆଦର୍ଶ ଦେଖି ନାହାନ୍ତି, ସେମାନେ ଅନ୍ୟ ସ୍ଥାନରୁ ଯେତେ ଉପଦେଶ ଶୁଣିଲେ, ବକ୍ତୃତା ଶୁଣିଲେ, ପ୍ରବନ୍ଧ ଲେଖିଲେ ବା ବକ୍ତୃତା ଦେଲେ ମଧ୍ୟ ପ୍ରକୃତ ଉନ୍ନତିପଥର ପଥିକ ହୋଇ ପାରନ୍ତି ନାହିଁ । ତାହାରୁ ଦେଖି ଶୁଣି ଗୋଟାଏ ତଥାକଥିତ ଭଦ୍ରତାର ଆବରଣରେ ଆବୃତ ହୋଇ ଅନେକେ ବିଚରଣ କରନ୍ତି, କିନ୍ତୁ ତାହା ଅକିଞ୍ଚିତ୍କର । ସେଥିରେ ଭଦ୍ରତା ପରିବର୍ତ୍ତରେ ଭଣ୍ଡାମି ମନୁଷ୍ୟଙ୍କୁ ଆଶ୍ରୟ କରେ ।

ଦୁଇଟି ପ୍ରାଚ୍ୟଦେଶର ତୁଳନା କରାଯାଉ । ଭାରତ ଓ ଜାପାନ— ଆସିଆ ମହାଦେଶସ୍ଥ ଏହି ଦୁଇଟି ଦେଶର ବର୍ତ୍ତମାନ ସାମାଜିକ, ରାଜନୀତିକ ଓ ଆଧ୍ୟାତ୍ମିକ ଅବସ୍ଥାରେ ଆକାଶ ପାତାଳ ପାର୍ଥକ୍ୟ କହିଲେ ଚଳେ । ଭାରତ ଅତିପ୍ରାଚୀନ କାଳରୁ ଲଲାଟରେ ଯେଉଁ ଉନ୍ନତିଟୀକା ଧାରଣ କରିଅଛି, ତାହା ଆଜି ସମ୍ପୂର୍ଣ୍ଣରୂପେ ଲିଭି ନ ଥିଲେ ମଧ୍ୟ ନିଷ୍ପ୍ରଭ । ଜାପାନ ଅତି ପ୍ରାଚୀନକାଳରୁ ଉନ୍ନତି ସହିତ ଅପରିଚିତ ଥିଲେ ମଧ୍ୟ

ତାହାର କପାଳରେ ହୀନତ୍ୱକଳଙ୍କ ବର୍ତ୍ତମାନ ଦେଦୀପ୍ୟମାନ । ଏକଥା ସତ୍ୟ ଯେ, "ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ ।" ସୁଖ ଦୁଃଖ ଚକ୍ରନେମିପରି ଆବର୍ତ୍ତିତ ହେଉଅଛି । କେହି ଚିରଦିନ ସୁଖୀ ବା ଦୁଃଖୀ ହୋଇ ରହି ନାହିଁ; କିନ୍ତୁ ଭାରତ ଯେଉଁ ପାପଫଳରେ ସୁଦୀର୍ଘକାଳ ଅଜ୍ଞାନତମସାଚ୍ଛନ୍ନାବସ୍ଥାରେ ପଡ଼ି ରହିଅଛି, ଆଜ ମଧ୍ୟ ସେ ଉକ୍ତପାପର ପ୍ରାୟଶ୍ଚିତ୍ତ ବିଧାନରେ ଜାଗରୂକ ନୁହେ— ଆଜ ମଧ୍ୟ ସେହି ଘୋର ସୁଷୁପ୍ତି ! କୌଣସି ଦେଶ ଯେତେ କ୍ଷୁଦ୍ର ହେଲେହେଁ ଏତେ ଦୀର୍ଘକାଳ ଅବନତିର ଗଭୀର ଗର୍ତ୍ତତଳେ ପଡ଼ି ରହିବା ଦେଖାଯାଏ ନାହିଁ । ଜାପାନରମଣୀ ନିଜର ଦୁଗ୍ଧଫେନନିଭ ଶଯ୍ୟାରେ ଅଭ୍ୟସ୍ତ ଜୀବନସର୍ବସ୍ୱ ଏକମାତ୍ର ପୁତ୍ରକୁ ଦେଶହିତ ପାଇଁ ଉଦ୍ବୋଧନ କରିବା ଶୁଣି ଏବଂ ଭାରତଲଲନାର ନିଜପୁତ୍ରକୁ ଶିକ୍ଷାଲାଭ ନିମିତ୍ତ ସାମାନ୍ୟ ଦୂରସ୍ଥାନକୁ ପ୍ରେରଣ କରିବାରେ ଅନିଚ୍ଛା ଦେଖି, କେଉଁ ହୃଦୟବାନ୍ ବ୍ୟକ୍ତି ଧୈର୍ଯ୍ୟାବଲମ୍ବନ କରି ରହି ପାରିବେ ? ଗତ ଇଂରେଜ, ଫରାସୀ ଓ ଜର୍ମାନ ଯୁଦ୍ଧରେ ୧୯୧୪ ଖ୍ରୀଷ୍ଟାବ୍ଦରୁ ୧୯୧୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମରପ୍ରାଙ୍ଗଣରେ ମଧ୍ୟ ପାଶ୍ଚାତ୍ୟ ସ୍ତ୍ରୀଜାତିର ସାହସ ସହିତ ଆମ୍ଭମାନଙ୍କ ସ୍ତ୍ରୀଜାତିର ସାହସ ତୁଳନା କରି କେଉଁ ହୃଦୟ ସ୍ଥିର ରହି ପାରେ ? ଆଜ ନାରୀଶିକ୍ଷା ପାଇଁ ଜାପାନ ଗୌରବମଣ୍ଡିତ ଜାପାନ; ପୁଣି ନାରୀଶିକ୍ଷା ଅଭାବରେ ଭାରତ ପଶ୍ଚାତ୍ପଦ । ସୁତରାଂ ବାଳକମାନଙ୍କର ଶିକ୍ଷା, ନାରୀମାନଙ୍କର ଶିକ୍ଷା, ଜନନୀମାନଙ୍କ ଶିକ୍ଷା—ଏହାହିଁ ଆମ୍ଭମାନଙ୍କର ମନ୍ତ୍ର ହେଉ । ଯେ ଉପାୟରେ ~~ବାଳିକାଶିକ୍ଷା~~ ପ୍ରବର୍ତ୍ତନ କରିବାକୁ ହେବ, ଯେ ଭାବରେ ନାରୀଶିକ୍ଷା ପ୍ରବର୍ତ୍ତିତ ହେଲେ ଦେଶର ମଙ୍ଗଳ ଅବଶ୍ୟମ୍ଭାବୀ, ଦେଶନେତାମାନେ ତାହା ଭାବି ସ୍ଥିର କରନ୍ତୁ ଏବଂ ପ୍ରତ୍ୟେକ ଭାରତବାସୀ— ବିଶେଷତଃ ପ୍ରତ୍ୟେକ ଉତ୍କଳବାସୀ ଭାରତକୁ ସୁମାତା ଦେବା ପାଇଁ, ଭାରତ ସନ୍ତାନର ଭବିଷ୍ୟତ୍ ଉଜ୍ଜ୍ୱଳ କରିବାପାଇଁ, ଭାରତକୁ ଗୌରବମୟ

କରିବାପାଇଁ ଯଥାଶକ୍ତି ଚେଷ୍ଟା କରନ୍ତୁ । ଗ୍ରାମେ ଗ୍ରାମେ ବାଳିକା-ବିଦ୍ୟାଳୟ ବସୁ,— ଗ୍ରାମେ ଗ୍ରାମେ ନାରୀଶିକ୍ଷା ସଙ୍ଗେ ସଙ୍ଗେ ନାରୀମର୍ଯ୍ୟାଦା ବୃଦ୍ଧିପ୍ରାପ୍ତ ହେଉ, ଗ୍ରାମେ ଗ୍ରାମେ ପୁଣି ସମସ୍ତେ ପ୍ରତ୍ୟକ୍ଷ କରନ୍ତୁ ଯେ, "ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ ।" ବାସ୍ତବିକ ଯେଉଁଠାରେ ନାରୀପୂଜା ହୁଏ, ସେହିଠାରେ ଦେବତାମାନଙ୍କର ବାସ ।

ଅମ୍ଭେମାନେ ଯେ ବର୍ତ୍ତମାନ କିପରି ଧର୍ମାନୁଷ୍ଠାନରେ ପ୍ରବୃତ୍ତ, ତାହା ପ୍ରଭୂଙ୍କୁ ଜଣା । ମା ଦୁର୍ଗାଙ୍କ ସମ୍ମୁଖରେ ବଳି, ପୂଜା, ପାଠ ଇତ୍ୟାଦିରେ ଅମ୍ଭେମାନେ ସର୍ବଦା ତତ୍ପର; କିନ୍ତୁ ମା ଦୁର୍ଗାଙ୍କ ପରି ସୁମାତା ହେଲେ ଯେ ଗଣେଶ କାର୍ତ୍ତିକଙ୍କ ପରି ସୁପୁତ୍ର ଏବଂ ଲକ୍ଷ୍ମୀ ସରସ୍ୱତୀଙ୍କ ପରି ସୁକନ୍ୟା ଲାଭ ଘଟେ, ତାହା ପାସୋରି ଯାଉଅଛୁଁ । ଅମ୍ଭମାନଙ୍କର ପୂଜାପାଠ ପ୍ରଭୃତି ସମସ୍ତ ଗୋଟିଏ ପ୍ରହସନରେ ପରିଣତ ହେଲାଣି । ଅମ୍ଭେମାନେ ବର୍ତ୍ତମାନ ଘୋର ପୌତ୍ତଳିକ । କେହି ଅମ୍ଭମାନଙ୍କୁ ପୌତ୍ତଳିକ କହିଲେ ଅମ୍ଭେମାନେ ଗରମ ହୋଇ ଉଠୁଁ—କିନ୍ତୁ ପ୍ରକୃତରେ ହିନ୍ଦୁଜାତିର ଅଧିକାଂଶ ବର୍ତ୍ତମାନ ଘୋର ପୌତ୍ତଳିକ । ବର୍ତ୍ତମାନ ଆଦର୍ଶ (Ideal) ପୂଜା ନ କରି ମୂର୍ତ୍ତି (Idol) ପୂଜାରେ ଅନେକେ ବ୍ୟସ୍ତ । ଭିତରର [Spirit] ପୂଜା ଛାଡ଼ିଦେଇ ବାହାରି (Form) ପୂଜାରେ ଅନେକେ ଆଗ୍ରହବାନ୍ । ଯେଉଁଦିନ ଦୁର୍ଗା, ଲକ୍ଷ୍ମୀ ସରସ୍ୱତୀ ପ୍ରଭୃତି ଦେବୀ ଓ ରାମ, କୃଷ୍ଣ, ବୁଦ୍ଧ ପ୍ରଭୃତି ଦେବତାମାନଙ୍କୁ କେବଳ ଭୋଗାରତିଗ୍ରାହକ ମୂର୍ତ୍ତିବିଶେଷରୂପେ ନ ମଣି ଭାରତସନ୍ତାନ ସେମାନଙ୍କୁ ନାରୀ ଓ ନରଜୀବନର ଆଦର୍ଶଶିକ୍ଷକ ଓ ଶିକ୍ଷୟିତ୍ରୀରୂପେ ଗ୍ରହଣ କରି ଜୀବନପଥରେ ଅଗ୍ରସର ହେବେ, ସେହିଦିନ ଆଉ ଦୁର୍ଗା, ସରସ୍ୱତୀ, ରାମ, କୃଷ୍ଣ, ପ୍ରଭୃତିଙ୍କର ମୂର୍ତ୍ତି ମୃଣ୍ମୟ ରହିବ ନାହିଁ—ସମସ୍ତ ଚିନ୍ମୟ ହୋଇଯିବ ! ସେହିଦିନ ଏକା ଭାରତର ସୁପ୍ତ ଦେବତାମାନେ ଘରେ ଘରେ ଜାଗ୍ରତ ହେବେ ଏବଂ ଭାରତ ଏକା ପୃଥିବୀବକ୍ଷରେ ଅସାମାନ୍ୟ ଓ ସର୍ବପ୍ରଧାନ ଜାତିରୂପେ ଗଣ୍ୟ ହେବ ।

ଅବାନ୍ତର ଭାବରେ ଆଉ ଗୋଟାଏ କଥା ଏଠାରେ ଲେଖିବାପାଇଁ ଇଚ୍ଛା କରୁଅଛୁ । ଭାରତରେ ବିଶେଷତଃ ଉତ୍କଳପାର୍ଶ୍ୱବର୍ତ୍ତୀ ବଙ୍ଗଦେଶରେ ଆଜି ବିବାହପଣ ଯେଉଁପରି ଭୀଷଣରୂପ ଧାରଣ କରିଅଛି, ସେଥିରେ ନାରୀଶିକ୍ଷା ପ୍ରତି ସମଧିକ ଶ୍ରଦ୍ଧାବାନ୍ ହେବା ସମସ୍ତଙ୍କର ଉଚିତ । ବାଳିକାମାନଙ୍କୁ ଉତ୍ତମରୂପେ ଶିକ୍ଷା ପ୍ରଦାନ କରି ସେମାନଙ୍କ ମୂଲ୍ୟ ଯଥାର୍ଥ ରୂପେ ବଢ଼ାଇବାକୁ ହେବ । ପୂର୍ବେ ବାଳିକାମାନେ ସ୍ୱୟମ୍ବରସଭାରେ ନିଜ ନିଜର ପତି ଇଚ୍ଛାନୁଯାୟୀ ମନୋନୀତ କରୁଥିଲେ । ସେଥିରେ ଯାହା ଗଳାରେ ବରମାଲ୍ୟ ପଡ଼ୁଥିଲା, ସେ ଆପଣାକୁ ଧନ୍ୟ ମନେ କରୁଥିଲା । ଏପରି କି ପ୍ରୌଢ଼ା କନ୍ୟାର ପାଣିଗ୍ରହଣ କରିବାପାଇଁ ଯୁବକମାନେ ଆପଣାକୁ ଯଥାର୍ଥରୂପେ ଯୋଗ୍ୟ କରୁଥିଲେ । ଦିନେ ହେଲେ ସେହି ଲୀଳାର ପୁନରଭିନୟ ହେବ-ଏହା ନିଶ୍ଚୟ । ଆମ୍ଭେମାନେ ତତ୍ପର ହେଲେ ଶୀଘ୍ର ନଚେତ୍ କାଳକ୍ରମେ ବିଳମ୍ବରେ ମଧ୍ୟ ଏହା ଦୃଷ୍ଟ ହେବ । ବିଶେଷତଃ ଭାରତରେ ପୁରୁଷଜାତି ନାରୀଜାତିକୁ ଯେପରି ଅବହେଳା-ଚକ୍ଷୁରେ ଦେଖିଅଛି, ଅଦୂର ଭବିଷ୍ୟତରେ ଏହି ପୁରୁଷଜାତି ପୁଣି ନାରୀଜାତିର କୃପାର ପାତ୍ର ହେବେ । ଯେଉଁ ଦେଶ ନାରୀଜାତିକୁ ତାହାର ପ୍ରାପ୍ୟ ସମ୍ମାନ ଦେବାକୁ ଶିଖିଅଛି, ସେହିଠାରେ ଏକା ସମତା ରକ୍ଷା ହେବ । କାଳଚକ୍ରର ଆବର୍ତ୍ତନକୁ ବାଧା ଦେବାର ଶକ୍ତି କାହାର ? ଆମ୍ଭେମାନେ କହୁଅଛୁଁ, ପିତାମାତା ବାଳିକାମାନଙ୍କୁ ଏପରି ସଦ୍ଗୁଣସମ୍ପନ୍ନ କରନ୍ତୁ, ଯଦ୍ୱାରା ପୁରୁଷମାନେ ସେମାନଙ୍କର ପାଣିଗ୍ରହଣ ନିମିତ୍ତ ଆଗ୍ରହାନ୍ୱିତ ହେବେ । ବଙ୍ଗଦେଶର [illegible]କାଣ୍ଡ ଦେଖି ଇଚ୍ଛା ହୁଏ, ଏହିପରି ସୁଶିକ୍ଷିତା ସର୍ବଗୁଣାଲଙ୍କୃତା ବାଳିକାମାନେ ମଧ୍ୟ ନିଜର ବିବାହପାଇଁ ନିଜେ ମତ ଦିଅନ୍ତୁ । ସେମାନେ ମଧ୍ୟ ଗୁଣବିହୀନ ପୁରୁଷଙ୍କୁ ପ୍ରତ୍ୟାଖ୍ୟାନ କରନ୍ତୁ । ପୁରୁଷ ସେମାନଙ୍କୁ ବିବାହ କରି ଆପଣାକୁ ଚରିତାର୍ଥ ମନେ କରୁ । ଯେତେବେଳେ ବାଳିକା-ମାନେ ଜୀବିକା-ଉପାର୍ଜନ-କ୍ଷମ ଶିକ୍ଷାଲୋକରେ ଆଲୋକିତ ହେବେ,

ସେତେବେଳେ ସ୍ତ୍ରୀ ପୁରୁଷ ମଧ୍ୟରେ ଗୋଟାଏ ସମତା ସ୍ଥାପିତ ହେବ ଏବଂ ଏହି ସମତା ସ୍ଥାପିତ ହେବା ସଙ୍ଗେ ସଙ୍ଗେ ଦେଶର ସର୍ବବିଧ ଉନ୍ନତି ସାଧିତ ହେବ । ତାହା ନ ହେବାଯାଏ ସ୍ତ୍ରୀ ଉପରେ ପୁରୁଷର ଅକାରଣ ଅତ୍ୟାଚାର ସ୍ଥଗିତ ହେବ ନାହିଁ । ଜନନୀ ଜନ୍ମଭୂମିର ମୁଖ ଉଜ୍ଜ୍ୱଳ ହେବ ନାହିଁ । ସ୍ୱର୍ଗର ସୋପାନ ସେ ପର୍ଯ୍ୟନ୍ତ ଦୃଷ୍ଟିର ଅନ୍ତରାଳରେ ରହିଥିବ ଓ ସମାଜ ଭୂତବାଜୀର ଗୋଟାଏ କେନ୍ଦ୍ରସ୍ୱରୂପ କାର୍ଯ୍ୟ କରୁଥିବ ।

## ଷଷ୍ଠ ଅଧ୍ୟାୟ ।

### ସୁମାତା ।

"What is wanting" said Napoleon one day to Madam Campan, in order that the youth of France be well educated ?" "Good mother," was the reply. The emperor was most forcibly struck with the answer. "Here" said he, "is a system in one word, *Abbott.*

ମଙ୍ଗଳମୟ ବିଧାତାଙ୍କର ବିଧାନରେ ଏ ମର୍ତ୍ତ୍ୟଭୂମି କୁମାତାଙ୍କ ବାସସ୍ଥଳ ନ ହେଲେହେଁ ଏକାବେଳକେ ସୁମାତାଙ୍କଦ୍ୱାରା ପୂର୍ଣ୍ଣ ନୁହେଁ । ଜନନୀମାନେ ପୁତ୍ରର ମଙ୍ଗଳାକାଙ୍କ୍ଷିଣୀ ସନ୍ଦେହ ନାହିଁ, ମାତ୍ର ଯେଉଁ ଜନନୀଙ୍କ ଠାରେ ହିତାହିତ ଜ୍ଞାନ ସମ୍ୟକ୍ ଭାବରେ ବିଦ୍ୟମାନ, ଆମ୍ଭେମାନେ କେବଳ ତାହାଙ୍କୁ ସୁମାତା ବୋଲି ଅଭିହିତ କରୁଅଛୁଁ ।

ସୁମାତାଙ୍କର କର୍ତ୍ତବ୍ୟ କଣ ? ତାହା ଏଠାରେ ସଂକ୍ଷେପରେ ଲିପିବଦ୍ଧ କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

ପ୍ରଥମତଃ—ସନ୍ତାନର ଲାଳନପାଳନ ଉତ୍ତମରୂପେ କରିବାପାଇଁ ମାତାଙ୍କର କେତେକ ବିଷୟରେ ଶିକ୍ଷା ଅତ୍ୟନ୍ତ ଆବଶ୍ୟକ । ସନ୍ତାନର ରୋଗ ନିବାରଣ ପାଇଁ କିଛିଏ ଔଷଧ ବା ପଥ୍ୟାପଥ୍ୟର ଜ୍ଞାନ ଏବଂ ତାହାର ଶିକ୍ଷାବିଧାନାର୍ଥ ନିଜର କିଛିଏ ସାହିତ୍ୟ, ଗଣିତାଦିରେ ଜ୍ଞାନ ଏବଂ ତାହାର ଭାବୀ ଜୀବନଗଠନ ସକାଶେ ରାମାୟଣ ମହାଭାରତ ପ୍ରଭୃତିର ଉତ୍କୃଷ୍ଟ ଚରିତ ସମ୍ବନ୍ଧରେ ଜ୍ଞାନ ପ୍ରୟୋଜନୀୟ । ମାତା ସନ୍ତାନକୁ ବାଲ୍ୟକାଳରୁ ଉତ୍ତମ ଉତ୍ତମ କଥାମାନ ଶୁଣାଇଲେ ସେମାନଙ୍କ ହୃଦୟରେ ତାହା ଚିରାଙ୍କିତ ହୋଇ ରହିଯାଏ ଏବଂ ଯଥାସମୟରେ ସୁଫଳ ପ୍ରସବ କରେ ।

ଦ୍ୱିତୀୟତଃ—ମାତା ନିଜର ଅଳସ୍ୟାଦି ଦୋଷରୁ ସନ୍ତାନ ହୃଦୟରେ କୌଣସି ଅଳୀକ ଭୟର ଅର୍ଥାତ୍ ଭୂତପ୍ରେତାଦିର ଭୟର ବୀଜ ରୋପଣ

କରିବେ ନାହିଁ । ଏହି ବୀଜରୁ ବିଷମୟ ଫଳ ଉତ୍ପନ୍ନ ହୋଇ ସନ୍ତାନର ଭବିଷ୍ୟତ୍ ଜୀବନକୁ ଛାରଖାର କରିଦିଏ ଏବଂ ସେ ମାନସିକ ଦୁର୍ବଳତାର ଅଧୀନ ହୁଏ ।

ତୃତୀୟତଃ—ନିଜର ସନ୍ତାନ କାହାରି ସଙ୍ଗରେ କଳହାଦି କରିଥିଲେ ଅନ୍ୟର ଦୋଷ ସକାଶେ ତାଙ୍କୁ ଗାଳି ନ ଦେଇ ନିଜର ସନ୍ତାନର ଦୋଷ ଦେଖି ତାହାକୁ ଧୀର ଓ ନମ୍ରଭାବରେ ଶାସନ କରିବା ବୁଦ୍ଧିମତୀ ମାତାର କାର୍ଯ୍ୟ । ସନ୍ତାନ ଯେପରି ନିଜର ଦୋଷ ସର୍ବାଗ୍ରେ ଦେଖିବାକୁ ଅଭ୍ୟସ୍ତ ହୁଏ, ମାତା ସେଥିପ୍ରତି ମନୋଯୋଗୀ ହେବେ ।

ଚତୁର୍ଥତଃ—ସନ୍ତାନକୁ ପାଠରେ ମନୋଯୋଗୀ କରିବାପାଇଁ ମାତା ଭୟ ପ୍ରଦର୍ଶନାଦି ନ କରି ଗୋଟିଏ ସୁନ୍ଦର ଉପାୟ ଅବଲମ୍ବନ କରିବେ । ତାହାକୁ କହିବେ, "ତୁ ଭଲ ନ ହେଲେ ମୁଁ ତୋତେ ପଢ଼ିବାକୁ ଦେବି ନାହିଁ ।" ଯେପରି ପିତାମାତାମାନେ ଅନେକ ସ୍ଥଳରେ କହିଥାନ୍ତି, "ତୁ ଭଲ ନ ପଢ଼ିଲେ ତୋତେ ମିଠାଇ ଦେବି ନାହିଁ ବା ଯାତ୍ରା ଦେଖିବାକୁ ସଙ୍ଗରେ ନେବି ନାହିଁ ।" ସେହିପରି "ତୁ ଭଲ ଆଚରଣ ନ ଦେଖାଇଲେ, ବଡ଼ବଡ଼ଙ୍କ କଥା ନ ମାନିଲେ, ତୋତେ ପାଠ ପଢ଼ାଇବି ନାହିଁ" ଏହା କହିଲେ ସୁକୁମାରମତି ସନ୍ତାନର ମନରେ ପାଠ ପ୍ରତି ଉତ୍ତରୋତ୍ତର ଗୋଟାଏ ଶ୍ରଦ୍ଧା ଜାତ ହୁଏ ଏବଂ ସେ ପାଠକୁ ଯାତ୍ରା ଦେଖିବା ବା ମିଷ୍ଟାନ୍ନ ଖାଇବା ପରି ଗୋଟିଏ ପ୍ରିୟକାର୍ଯ୍ୟ ବୋଲି ମନେ କରେ । ତାହାଦ୍ୱାରା ସନ୍ତାନର ପ୍ରକୃତ ମଙ୍ଗଳ ସାଧିତ ହୁଏ ।

ପଞ୍ଚମତଃ—ମାତା ସନ୍ତାନ ନିକଟରେ କେବେହେଁ କାହାରି ନିନ୍ଦା କରିବେ ନାହିଁ, ମିଥ୍ୟାକଥା କହିବେ ନାହିଁ, ତାହାଠାରୁ ମିଥ୍ୟାକଥା ଶୁଣିଲେ ଅନ୍ତରରେ ଦୁଃଖିତ ହେବେ । ମୋଟରେ କହିବାକୁ ଗଲେ ମାତା ଆଦର୍ଶ ଚରିତ୍ର ନ ଦେଖାଇଲେ ସନ୍ତାନ ସୁଶିକ୍ଷିତ ହେବା ଦୁଷ୍କର ।

ଷଷ୍ଠତଃ—ପୁତ୍ର ବିବାହିତ ହେଲେ ପୁତ୍ର ଏବଂ ପୁତ୍ରବଧୂ ଓ ତନୟ

ଅନ୍ୟ ନବ ବନ୍ଧୁ ବାନ୍ଧବମାନଙ୍କ ପ୍ରତି ମାତା ଅତି ଗମ୍ଭୀର, ସାବଧାନ ଏବଂ ବିଚକ୍ଷଣ ଭାବରେ ବ୍ୟବହାର କରିବେ । ଦେଶ କାଳ ପାତ୍ରର ପରିବର୍ତ୍ତନ ସଙ୍ଗେ ସଙ୍ଗେ ନିଜର ଆଗର ବ୍ୟବହାରର ପରିବର୍ତ୍ତନ ସୁଧୀ ବ୍ୟକ୍ତିର କର୍ତ୍ତବ୍ୟ । ପୁତ୍ରବଧୂ ସମକ୍ଷରେ ପୁତ୍ରକୁ ବା ପୁତ୍ରସମ୍ମୁଖରେ ପୁତ୍ରବଧୂକୁ ଗାଳିମନ୍ଦ ଦେବା ସୁମାତାର କାର୍ଯ୍ୟ ନୁହେ । ଯାହାର ତ୍ରୁଟି ତାହାକୁ ତାହା ଗୋପନରେ ଜଣାଇ ଦେବା ସୁବୁଦ୍ଧିର କାର୍ଯ୍ୟ ।

ପରିଶେଷରେ ଏତିକି ବକ୍ତବ୍ୟ ଯେ, ଗୃହ ଗୋଟିଏ କ୍ଷୁଦ୍ର ରାଜ୍ୟସ୍ୱରୂପ । ମାତା ତାହାର ଶାସନକର୍ତ୍ତ୍ରୀ; ସୁତରାଂ ରାଜ୍ୟଶାସନ କରିବାକୁ ଗଲେ ଯେପରି ସାମ, ଦାନ, ଭେଦ, ଦଣ୍ଡ ଓ ଉପେକ୍ଷା ନୀତିମାନ ଅବଲମ୍ବନ କରିବାକୁ ହୁଏ, ଗୃହପାଳନ କାର୍ଯ୍ୟରେ ମଧ୍ୟ ପ୍ରୋକ୍ତ ନୀତିମାନଙ୍କର ଅଳ୍ପାଧିକ ପ୍ରୟୋଗ ଆବଶ୍ୟକ । ଭେଦ ଓ ଦଣ୍ଡନୀତି ଯେତିକି ଅଳ୍ପ ପ୍ରୟୋଗ କରାଯାଏ କିମ୍ବା ଆଦୌ ପ୍ରୟୋଗ କରିବାକୁ ନ ହୁଏ ଏବଂ ସାମ, ଦାନ ଓ ଉପେକ୍ଷା ନୀତି ଯେତିକି ଅଧିକ ପ୍ରଯୁକ୍ତ ହୁଏ, ସେତିକି ମଙ୍ଗଳର ଆଶା ।

ବର୍ତ୍ତମାନ ଯେଉଁ ଯେଉଁ ଜନନୀମାନଙ୍କ ଆନ୍ତରିକ ଆଶୀର୍ବାଦ, ପବିତ୍ର ଶିକ୍ଷା ଓ ଜ୍ୱଳନ୍ତ ଉଦାହରଣରେ ଜାତକମାନଙ୍କ ଜୀବନ ସୁଖମୟ, ପବିତ୍ର ଓ ଉଦାହରଣସ୍ଥାନୀୟ ହୋଇଅଛି, ଆମ୍ଭେମାନେ ତହିଁରୁ କେତୋଟି ଜୀବନର ଆଲୋଚନା ଏଠାରେ କରିବୁଁ । ପୂର୍ବେ ବୋଲା-ଯାଇଅଛି ଯେ, ସୁମାତା ନ ହେଲେ ସୁପୁତ୍ରର ମୁଖଦର୍ଶନ ପ୍ରାୟ ଭାଗ୍ୟରେ ଘଟେ ନାହିଁ । ଆଧୁନିକ ଭାରତର ଦୈନନ୍ଦିନ ଜୀବନରେ ଅନେକେ ଏହି ସତ୍ୟଟି ଉପଲବ୍ଧି କରୁଥିବେ । ଯାହାହେଉ, ଅଜ୍ଞାନତମସାଚ୍ଛନ୍ନ ପୃଥିବୀରେ କେତେଗୋଟି ମାତୃଜୀବନ ଆଲୋକସ୍ତମ୍ଭ ପରି ବିଦ୍ୟମାନ ରହିଅଛି ।

ସୁନୀତି ରାଜା ଉତ୍ତାନପାଦଙ୍କ ସହଧର୍ମିଣୀ । ତାହାଙ୍କ ସପତ୍ନୀ ସୁରୁଚିର ପ୍ରରୋଚନାରେ ପଡ଼ି ଉତ୍ତାନପାଦ ଯେତେବେଳେ ସୁନୀତିଙ୍କୁ ନିଗ୍ରହଦୃଷ୍ଟିରେ ଦେଖିବାକୁ ଲାଗିଲେ, ସେତେବେଳେ ସୁରୁଚି ଭୟରେ

ରାଜା ସୁନୀତିପୁତ୍ର ଧ୍ରୁବଙ୍କୁ ଆପଣାର ପୁତ୍ର ବୋଲି କୋଳରେ ସ୍ଥାନ ଦେବାକୁ ଶଙ୍କିତ ହେଲେ, ଯେତେବେଳେ ସୁରୁଚିପୁତ୍ର ଉତ୍ତମ ରାଜୈଶ୍ୱର୍ଯ୍ୟଭୋଗୀ ଓ ସୁନୀତିପୁତ୍ର ଧ୍ରୁବ ପଥର ଭିକ୍ଷୁକପ୍ରାୟ, ସେତେବେଳେ ସୁନୀତିଙ୍କର ହୃଦୟବେଦନା ଅସହ୍ୟ ହୋଇପଡ଼ିଲା । ରାଜାଙ୍କ ଇଚ୍ଛା ବିପକ୍ଷରେ ଜଣେ ଅବଳା କଣ କରି ପାରେ ? ଯେତେବେଳେ ମନୁଷ୍ୟ ନିରାଶ୍ରୟ, ନିରୁପାୟ ଭାବି ଭାବି ଆପଣାକୁ ନିରୁପାୟ ବା ଅନନ୍ୟଗତିକ ମନେ କରି ଦୁର୍ଗତି ଲାଭ କରେ, ସେତେବେଳେ ଦୁର୍ଗତିର ଗତି ଶ୍ରୀହରିଙ୍କ କୃପାଲାଭ କରିବାର ପ୍ରକୃଷ୍ଟ ସମୟ । ସୁନୀତି ପୁତ୍ରର ଦୀନାବସ୍ଥା ଆଉ ସ୍ୱଚକ୍ଷୁରେ ଦର୍ଶନ କରି ପାରିଲେ ନାହିଁ—ରାଜପୁତ୍ରର ଏବମ୍ବିଧ ଅବସ୍ଥା ଭାବି ସତତ ମ୍ରିୟମାଣା ହୋଇ ରହିଲେ । ଦିନେ ପୁତ୍ର ନିକଟରେ ଆପଣାର ସମସ୍ତ ଦୁଃଖ କହିବାକୁ ଲାଗିଲେ । ପୁତ୍ର ବାଳକ, ତଥାପି ପ୍ରିୟଜନଙ୍କୁ ହୃଦୟର ଦୁଃଖ ଜଣାଇ ନ ଦେଲେ ସେ ଦୁଃଖଭାର ଦିନ୍‌କୁଦିନ ବଢ଼େ ଏବଂ ଶେଷରେ ଦୁର୍ବିସହ ହୁଏ । ବାଳକ ସେ ସବୁ ଦୁଃଖର କାହାଣୀ ଶୁଣି ଆପଣାର ବାଳସୁଲଭ ବୁଦ୍ଧିରେ ପଚାରି ବସିଲା, "ମା, ଏ ଦୁଃଖ ଦୂର କରି ପାରିବ କିଏ ?" ମା ସରଳ ଭାବରେ ବ୍ୟକ୍ତ କଲେ, "ବାବୁ ରେ, ଶ୍ରୀହରି ଏ ଦୁଃଖ ଦୂର କରିବେ—ଆଉ ଦୂର କରିବ କିଏ ?" ବାଳକ କୌତୂହଳାକ୍ରାନ୍ତ ହୋଇ ପ୍ରଶ୍ନ କରୁଅଛି, "ମା, ଶ୍ରୀହରି କେଉଁଠାରେ ଥାନ୍ତି ? ସୁନୀତି ନିଜର ସହଜ ବିଶ୍ୱାସକୁ ଅବଲମ୍ବନ କରି କହିଲେ, "ବାପଧନ, ଶ୍ରୀହରି ବନମଧ୍ୟରେ ଥାନ୍ତି—ତାଙ୍କୁ କେହି ଦେଖି ପାରନ୍ତି ନାହିଁ । ଧ୍ରୁବ ଆଉ କିଛି ନ କହି ବନମଧ୍ୟକୁ ଯାଇ ଶ୍ରୀହରିଙ୍କୁ ଆପଣାର ଦୁଃଖ ଦୁର୍ଦ୍ଦଶା ସମସ୍ତ ଜଣାଇବେ ବୋଲି ସ୍ଥିର କଲେ । ଈଶ୍ୱର ସାକାର କି ନିରାକାର ? ସେ ଦର୍ଶନ ଦିଅନ୍ତି କି ନାହିଁ—ବାଳକର ସରଳବୁଦ୍ଧିରେ ଏ ସମସ୍ତ ଜଟିଳ ପ୍ରଶ୍ନ ପଶିଲା ନାହିଁ । ସେ ମାତାଙ୍କ କଥାରେ ସମ୍ପୂର୍ଣ୍ଣ ବିଶ୍ୱାସ କରି "ଶ୍ରୀହରି ବନରେ ଥାଆନ୍ତି" ଏହିତକ ବେଦବାକ୍ୟ ବୋଲି ଗ୍ରହଣ କଲେ ।

ଯେତେବେଳେ ଧ୍ରୁବ ମାତାଙ୍କୁ କହିଲେ, "ମୁଁ ତେବେ ବନମଧ୍ୟକୁ ଯାଇ ଶ୍ରୀହରିଙ୍କୁ ଆମର ଦୁଃଖ ଜଣାଇବି ।" ସେତେବେଳେ ମାତୃପ୍ରାଣ ପୁତ୍ରର ବନଗମନର ପ୍ରସ୍ତାବ ଶୁଣି ଚମକିଉଠିଲା । ସୁନୀତି କହିଲେ, "ବନରେ ବାଘ ଭାଲୁ ଆଦି ଥାଆନ୍ତି । ବନ କଣ୍ଟାରେ ପୂର୍ଣ୍ଣ, ତୁ ବନମଧ୍ୟକୁ କିପରି ଯିବୁ? ଧ୍ରୁବ ସମସ୍ତ କଷ୍ଟ ସ୍ୱୀକାର କରି ଶ୍ରୀହରିଙ୍କ ନିକଟକୁ ଯିବାପାଇଁ କୃତ-ସଂକଳ୍ପ । ମାତା ବ୍ୟଥିତ ହେବେ ବୋଲି ଆଉ କିଛି କହିଲେ ନାହିଁ ସତ୍ୟ, କିନ୍ତୁ ନିଶୀଥକାଳରେ ଶଯ୍ୟା ତ୍ୟାଗ କରି ମାତାଙ୍କ ଅଗୋଚରରେ ଭବିଷ୍ୟତ ସୁଖ ଆଶାରେ ବର୍ତ୍ତମାନର ସମସ୍ତ କଷ୍ଟକୁ ଉପେକ୍ଷା କରି ବାହାରିଲେ । କି ବିଶ୍ୱାସ ! ମା କହି ଦେଇଅଛନ୍ତି — ହରି ବନରେ ଅଛନ୍ତି, ତେବେ ସେ ନିଶ୍ଚୟ ବନରେ ଅଛନ୍ତି ! ଏଣେ ଅର୍ଦ୍ଧରାତ୍ର; ଘୋର ଅନ୍ଧକାର ! ବାଳକ ବନଦେଶ ଅତିକ୍ରମ କରୁ କରୁ "ଶ୍ରୀହରି କେଉଁଠାରେ ଅଛ, ଦେଖାଦିଅ" ବୋଲି ଚିତ୍କାର କଲା । ବନ୍ୟ ହିଂସ୍ରଜନ୍ତୁଙ୍କର ଭୟ ଶୁଦ୍ଧ ପବିତ୍ର ହୃଦୟକୁ ଏକାବେଳକେ ସ୍ପର୍ଶ ସୁଦ୍ଧା କରି ପାରୁ ନାହିଁ । ହୃଦୟ ଅପବିତ୍ର ହେଲେ ସିନା ସକଳ ଭୟର ଜନ୍ମଭୂମି ହୁଏ; ଏ ଯେ ଅପାପବିଦ୍ଧ ଶରୀର ଓ ମନ । ଯାହା ହେଉ, ପୁରାଣବର୍ଣ୍ଣନାନୁଯାୟୀ ଧ୍ରୁବ ନାନା ବାଧାବିପତ୍ତି ଅତିକ୍ରମ କରି ପ୍ରଥମରେ ନାରଦଙ୍କର ଦର୍ଶନ ଓ ତାହାଙ୍କ ସାହାଯ୍ୟରେ ଶ୍ରୀହରିଙ୍କ ଦର୍ଶନ ଲାଭକରି ଆପଣାକୁ, ଆପଣାର ମାତାଙ୍କୁ, ଆପଣାର ପିତା ପ୍ରଭୃତିଙ୍କୁ ଧନ୍ୟ କଲେ । ନିଜର ଦୁଃଖ ଚିରକାଳ ସକାଶେ ଦୂର ହେଲା ! ଏପରି ଶିଶୁକୁ ହୃଦୟରେ ଧାରଣ କରି ଭାରତ ଧନ୍ୟ ହେଲା । ଧ୍ରୁବଲୋକର ସୃଷ୍ଟି ହେଲା ! ଏ ସବୁର ମୂଳରେ କିଏ ? ସୁନୀତି ତ ? ପୁତ୍ରକୁ ଅନ୍ୟ କୌଣସି କୁବୁଦ୍ଧି ନ ଶିଖାଇ ନିଜେ କୌଣସି ଅଶିକ୍ଷିତାଙ୍କ ପରି ଆତ୍ମହତ୍ୟା ବା ସ୍ୱାମୀଙ୍କୁ ଅବୈଧ ଉପାୟରେ ବଶୀଭୂତ କରିବାର ଉପାୟ ଉଦ୍ଭାବନ ନ କରି ନିଜକୁ ଶ୍ରୀହରିଙ୍କଠାରେ ସମର୍ପଣ କରିଥିଲେ ବୋଲି ପୁତ୍ରକୁ "ଶ୍ରୀହରି ସହାୟ" ବୋଲି କହି ପାରିଲେ । ଯେଉଁ ଜନନୀ

ସୁଗ୍ରୀବଙ୍କ ପର ଶ୍ରୀହର ଅମ୍ଭମାନଙ୍କର ଏକମାତ୍ର ସହାୟ ବୋଲି ପୁତ୍ରକୁ ଯଥାର୍ଥଭାବରେ ଶିକ୍ଷା ଦେଇ ପାରନ୍ତି ସେ ତ ଦେଖା ।

ଲକ୍ଷ୍ମଣଙ୍କ ମାତାଙ୍କ ନାମ ସୁମିତ୍ରା । ଯେଉଁବେଳେ ପିତୃସତ୍ୟପାଳନ କରିବାପାଇଁ ରାମଚନ୍ଦ୍ର ଚତୁର୍ଦ୍ଦଶ ବର୍ଷ ବନଗମନୋଦ୍ୟତ, ସେତେବେଳେ ସୁମିତ୍ରାଙ୍କର ଛବି ହୃଦୟ ମାନସପଟରେ ଅଙ୍କନ କଲେ ହୃଦୟ ଗୌରବରେ ଅପ୍ଳୁତ ହୁଏ । ସମସ୍ତେ ଜାଣନ୍ତି ଲକ୍ଷ୍ମଣ ସର୍ବଦା ରାମଙ୍କର ଏକାନ୍ତ ଅନୁଗତ । ରାମତ ଚଉଦବର୍ଷ ବନରେ ବାସ କରିବେ—ଲକ୍ଷ୍ମଣ ? ବର୍ତ୍ତମାନ କାଳରେ ମାତାମାନେ ହୃଦୟ ନିଜ ନିଜ ମନକୁ ପରୀକ୍ଷା କରି ବୁଝନ୍ତୁ ତ, ମନ କଣ କହେ ? ଦିନେ ନୁହେ, ବର୍ଷେ ନୁହେ ଚଉଦ ବର୍ଷ । ଲକ୍ଷ୍ମଣ ସୁମିତ୍ରାଙ୍କର ପୁଣି ଅତିପ୍ରିୟ ପୁତ୍ର । ଏପରି ପୁତ୍ରକୁ ପରପୁତ୍ର ସକାଶେ ଚଉଦ ବର୍ଷ ଛାଡ଼ି ରହିବାପାଇଁ କେଉଁ ଜନନୀର ପ୍ରାଣ ଧୈର୍ଯ୍ୟ ଧାରଣ କରି ପାରେ ? କିନ୍ତୁ ଏ କ୍ଷେତ୍ରରେ କଣ ହେଲା ? କାଳେ ଲକ୍ଷ୍ମଣଙ୍କ ହୃଦୟକୁ ଦୁର୍ବଳତା ଆସିବ, ଏହି ଆଶଙ୍କା କରି ବୀରନାରୀ ସୁମିତ୍ରା ପୁତ୍ରକୁ କହିଲେ, "ଦେଖ, ରାମଚନ୍ଦ୍ର ବନକୁ ଗଲେ, ତୁମେ ନିଜର ସମସ୍ତ ସୁଖରେ ଜଳାଞ୍ଜଳି ଦେଇ ଅଗ୍ରଜଙ୍କର ଯେଉଁଥିରେ ସୁଖର ସମ୍ଭାବନା, ତାହାର ସାଧନରେ— ଅଗ୍ରଜଙ୍କ ସେବାରେ—ଆପଣାକୁ ସତତ ବ୍ରତୀ ରଖିବ । ମୁଁ ମୋ ନିମିତ୍ତ ତୁମକୁ ଅଯୋଧ୍ୟାରେ ରଖିବାକୁ ଚାହେଁ ନାହିଁ, ତୁମେ ଶ୍ରୀରାମଙ୍କର ସେବା କରି, ଅସହାୟ ଅବସ୍ଥାରେ ତାଙ୍କର ସହାୟ ହୋଇ ଧନ୍ୟ ହୁଅ—ମୁଁ ଏତିକି ଦେଖି ଜୀବନ ଚରିତାର୍ଥ କରେ ।" ପୁତ୍ର ଏତିକି ଶୁଣିଲା ମାତ୍ରକେ ହୃଦୟରେ ଦ୍ୱିଗୁଣ ବଳ ଘେନି ଅଗ୍ରଜଙ୍କ କଣ୍ଟକମୟ ପଥର ଏକମାତ୍ର ସହାୟ ହେବାପାଇଁ ଅଗ୍ରସର ହେଲେ । କେବଳ ଜନନୀଙ୍କର ଏହି ଉତ୍ସାହବାଣୀରେ ଉଦ୍‌ବୁଦ୍ଧ ହୋଇ ସେ ଅରଣ୍ୟ ମଧ୍ୟରେ ଶତ ଶତ ଯନ୍ତ୍ରଣାକୁ ଅମ୍ଳାନ ବଦନରେ ଆଲିଙ୍ଗନ କରି ପାରୁଥିଲେ, ଅସାଧ୍ୟ ସାଧନ କରୁଥିଲେ, ପ୍ରକୃତ ଅନୁଜର କାର୍ଯ୍ୟ କରି ଗୌରବ-କେତନ

ଉଡ଼ାଇଥିଲେ । ଧନ୍ୟ ସୁମିତ୍ରା ! ତୁମେ ଯେ ଭାରତରମଣୀ, ଆଜି ଏ କଥା କିଏ ବିଶ୍ୱାସ କରିବ ? ସେଦିନ ଜାପାନ-ରମଣୀର ଏହିପରି ଉଦ୍‌ବୋଧନବାଣୀ ଶ୍ରବଣ କରିଥିଲି । ଆଜି କଣ ତୁମେ ଭାରତକୁ ପରିତ୍ୟାଗ କରି ଜାପାନକୁ ସ୍ମୃତିମୟ କରିଅଛ ? ସୁମିତ୍ରା ପରି ରମଣୀ ଛତିଶ କୋଟି ଲୋକପୂର୍ଣ୍ଣ ଭାରତରେ ୩୬ ଗୋଟି କି ଦୃଷ୍ଟିଗୋଚର ହେବେ ? କେ ଜାଣି ? ୩୪ ଗୋଟି ଅଛନ୍ତି କି ନାହିଁ, ଛତିଶଟି ତ ଦୂରର କଥା !

ଲବକୁଶଙ୍କର ବୀରତ୍ୱକାହାଣୀ ଅନେକେ ଶୁଣି ଅଛନ୍ତି । ସତୀ ପତିବ୍ରତା ସାଧ୍ୱୀ ସୀତା ଯେତେବେଳେ ପ୍ରଜାବତ୍ସଳ କର୍ତ୍ତବ୍ୟପରାୟଣ ପତିକର୍ତ୍ତୃକ ନିର୍ବାସିତା ହୋଇ ଋଷି ଆଶ୍ରମରେ ଲବକୁଶନାମକ ଯମଜ ପୁତ୍ର ଦିଓଟିଙ୍କୁ ଘେନି କାଳାତିପାତ କରୁଅଛନ୍ତି, ପାଠକ ଥରେ ସେ ଦୃଶ୍ୟ କଳ୍ପନାନେତ୍ରରେ ପରିଦର୍ଶନ କରନ୍ତୁ । ଏହି ସମୟରେ ରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ ଆରମ୍ଭ କରି ଯଜ୍ଞପ୍ରଥାନୁଯାୟୀ ଅଶ୍ୱକୁ ଚତୁର୍ଦ୍ଦିଗକୁ ପ୍ରେରଣ କଲେ । ଅମିତବିକ୍ରମ ରାମଚନ୍ଦ୍ର ଓ ତାହାଙ୍କର ଭ୍ରାତାମାନଙ୍କ ବିପକ୍ଷରେ ସେତେବେଳେ ଅସ୍ତ୍ରଧାରଣ କରିବାକୁ ସାହସ କାହାର ? ରାମପ୍ରେରିତ ଅଶ୍ୱକୁ ସ୍ପର୍ଶ କରିବା ତ ଦୂରର ଥାଉ, ତାହାକୁ ଦେଖିବା ମାତ୍ରକେ ରାଜନ୍ୟବର୍ଗ ନତମସ୍ତକ ! କିନ୍ତୁ ଲବ କୁଶ ଦୁଇ ଭାଇ ଅଶ୍ୱକୁ ଧରି ପକାଇଲେ । ସତୀ ସୀତାଙ୍କର ପୁତ୍ର ବୋଲି ସେମାନଙ୍କ ହୃଦୟ ସତ୍‌ସାହସରେ ଓ ନୈସର୍ଗିକ ବଳରେ ପରିପୂର୍ଣ୍ଣ । ଲବକୁଶଙ୍କର ଏ ସାହସର କଥା ଶୁଣି ସମସ୍ତେ ବିଶେଷତଃ ରାମଚନ୍ଦ୍ର ଓ ତଦୀୟ ଭ୍ରାତାମାନେ ଉପହାସ କରିବାକୁ ଲାଗିଲେ ଏବଂ ବାଳକଦ୍ୱୟଙ୍କୁ ଏପରି ଦୁଃସାହସ ନିମନ୍ତେ ନିୟମାନୁଯାୟୀ ଯୁଦ୍ଧରେ ପରାସ୍ତ କରି ଶାସ୍ତି ଦେବାପାଇଁ ବଦ୍ଧପରିକର ହେଲେ । ଯୁଦ୍ଧର ଦିବସ ସ୍ଥିରୀକୃତ ହେଲା । ଯେତେବେଳେ ବାଳକ ଦିଓଟି ଅପରିସୀମ ପ୍ରତାପଶାଳୀ ରାଜାଙ୍କ

ବିପକ୍ଷରେ ଯୁଦ୍ଧଯାତ୍ରା କରିବାପାଇଁ ପ୍ରସ୍ତୁତ, ସେତେବେଳେ ସତୀ ସୀତାଙ୍କର ପୁତ୍ରପ୍ରତି ଉତ୍ସାହବାଣୀ ଶୁଣି କେଉଁ ନିଦ୍ରିତହୃଦୟ ଜାଗ୍ରତ ନ ହେବ ? ସୀତା ଏହି କଥା କହି ପୁତ୍ରମାନଙ୍କର ଶରୀର ବାରମ୍ବାର ସ୍ପର୍ଶ କରୁଅଛନ୍ତି :—"ମୁଁ ଯଦି ଜନ୍ମରୁ ସତୀ ହୋଇଥାଏଁ, ତେବେ ତୁମ୍ଭେମାନେ ନିଶ୍ଚୟ ଯୁଦ୍ଧରେ ଜୟୀ ହେବ; ସୂର୍ଯ୍ୟ,ଚନ୍ଦ୍ର, ଗ୍ରହ, ନକ୍ଷତ୍ରମାନେ ଯଦ୍ୟପି ମୋର ଅକଳଙ୍କିତ ମନର ସାକ୍ଷୀ ହୋଇଥାନ୍ତି, ତୁମ୍ଭେମାନେ ନିଶ୍ଚୟ ଯୁଦ୍ଧରେ ଜୟୀ ହେବ । ହେ ଈଶ୍ୱର — ଦେଖ; ଲବକୁଶ ସତୀତ୍ୱର ପ୍ରତିନିଧି ସ୍ୱରୂପ ସମର-ପ୍ରାଙ୍ଗଣକୁ ଯାଉଅଛନ୍ତି, ଯଦି ସେମାନେ ଯୁଦ୍ଧରେ ଜୟଲାଭ କରନ୍ତି, ତେବେ ଏମର୍ତ୍ତ୍ୟ ଧାମରେ ସତୀତ୍ୱର ବୈଜୟନ୍ତୀ ଚିରକାଳ ଉଡ୍ଡୀନ ରହିବ; ସେମାନେ ପରାସ୍ତହେଲେ ସତୀତ୍ୱର ମୂଲ୍ୟ ନାହିଁ ବୋଲି ସମସ୍ତେ ସ୍ଥିର କରିବେ—ଏ ପୃଥିବୀ ଦାନବର କ୍ରୀଡ଼ାକ୍ଷେତ୍ରରେ ପରିଣତ ହେବ । ଯାଅ ଲବ କୁଶ, ରାମଚନ୍ଦ୍ର ଓ ତଦୀୟ ଭ୍ରାତାମାନଙ୍କର ସମସ୍ତ ପରାକ୍ରମକୁ ମୋର ସତୀତ୍ୱର ପରାକ୍ରମ ଦ୍ୱାରା ନିଷ୍ପ୍ରଭ କରି ଶୀଘ୍ରଆସ – ଈଶ୍ୱର ତୁମ୍ଭର ସହାୟ ।" ଏହିପରି ବୀରବାଣୀ—ଆଶୀର୍ବାଣୀକୁ ସମ୍ବଳ କରି ଅସୀମ ନିର୍ଭୀକ ତେଜରେ ତେଜୀୟାନ ଲବକୁଶ ଯୁଦ୍ଧକ୍ଷେତ୍ରରେ ଉପସ୍ଥିତ ହେଲେ । ତାହାଙ୍କୁ ଦେଖିବା ମାତ୍ରକେ ସମସ୍ତଙ୍କର ଆଖି ଝଲସି ପଡ଼ିଲା । ତୁମୁଳ ଯୁଦ୍ଧ ଆରମ୍ଭ ହେଲା । ବିଜୟଲକ୍ଷ୍ମୀ କାହାର ଅଙ୍କଶାୟିନୀ ହେବେ କତକ୍ଷଣ ପର୍ଯ୍ୟନ୍ତ କେହି ସ୍ଥିର କରି ପାରିଲେ ନାହିଁ । ଶେଷରେ ଶ୍ରୀରାମଚନ୍ଦ୍ର ଲବକୁଶଙ୍କର ବୀରତ୍ୱରେ ମୁଗ୍ଧହୋଇ ସମରଭୂମି ପରିତ୍ୟାଗ କଲେ । ଲବକୁଶ ଜନନୀଙ୍କର ପବିତ୍ର ଯଶଃ ବିସ୍ତାରି କରି ଗୌରବ-ମୁକୁଟମଣ୍ଡିତ ହୋଇ ମାତାଙ୍କ ନିକଟକୁ ଫେରି ଆସିଲେ । ଏହିପରି ସତୀ ବୀରଜାୟାଙ୍କ ବାହୁଲ୍ୟ ସଙ୍ଗେ ସଙ୍ଗେ ବୀରସନ୍ତାନମାନଙ୍କଦ୍ୱାରା ଭାରତମାତାଙ୍କ ଅଙ୍କ ଯେ ସୁଶୋଭିତ ହେବ, ସେଥିରେ କାହାର ସନ୍ଦେହ ଥାଇପାରେ ?

ବହୁଳା ମହାଭାରତୋକ୍ତି ଖିତ ଜନୈକା ବୀରରମଣୀ । ସେ କୁରୁକ୍ଷେତ୍ର-ଯୁଦ୍ଧ ସମୟରେ ନିଜ ପୁତ୍ରଙ୍କୁ ଯୁଦ୍ଧରେ ବିମୁଖ ଦେଖି ଯେପରି ଉତ୍ତେଜନା ଦେଇଅଛନ୍ତି, ତହିଁରେ ଆଜି ଭାରତ ମହିଳାଙ୍କର ପ୍ରତୀତ ହେବ କି ? ରାଜପୁତ ନାରୀମାନଙ୍କର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ, ରାଜପୁତାନା ମଧ୍ୟ ବହୁକାଳ ପର୍ଯ୍ୟନ୍ତ ଆଧୁନିକ ଜାପାନ ଅପେକ୍ଷା ବହୁଗୁଣରେ ତେଜସ୍ୱୀ ଥିଲା ଏବଂ କେତେ କେତେ ବୀରନାରୀ ବୀର-ପ୍ରସବିନୀ ହୋଇ ଭାରତର ଗୌରବ ଅକ୍ଷୁଣ୍ଣ ରଖିଥିଲେ ।

ପୁଣି ପୁରାଣର ବର୍ଣ୍ଣନା ଛାଡ଼ିଦେଇ ବର୍ତ୍ତମାନ ଯୁଗକୁ ଦେଖିଲେ ସୁମାତାର ଅଭାବ ଏକାବେଳକେ ପରିଲକ୍ଷିତ ହୁଏ ନାହିଁ । ଫାଷ୍ଟ ବୁକ୍ (First Book) ରଚୟିତା ପ୍ରେସିଡେନ୍‌ସି କଲେଜର ଅଧ୍ୟାପକ ଶ୍ରୀଯୁକ୍ତ ପ୍ୟାରୀଚରଣ ସରକାର ଅନେକଙ୍କ ନିକଟରେ ପରିଚିତ । ତାଙ୍କର ଭ୍ରାତୁଷ୍ପୁତ୍ର ସ୍ୱର୍ଗୀୟ ଶ୍ରୀଯୁକ୍ତ ବାବୁ ନରେନ୍ଦ୍ରନାଥ ସରକାର ଅନ୍ତତଃ କଟକବାସୀଙ୍କ ନିକଟରେ ସତ୍ୟବାଦୀ, ଜିତେନ୍ଦ୍ରିୟ ଓ ପରୋପକାରୀ ଓକିଲ ବୋଲି ସୁବିଦିତ ଥିଲେ ମୁଁ ଶ୍ରୀଯୁକ୍ତ ବାବୁ ବିଶ୍ୱନାଥ କର ଓ ମୋର କତିପୟ ବନ୍ଧୁଙ୍କ ସହିତ ସତ୍ୟପ୍ରିୟ ଓକିଲଙ୍କୁ ଦେଖିବାକୁ ଯାଇଥିଲି । ଓକିଲ ବ୍ୟବସାୟ ଅବଲମ୍ବନ କରି ମଧ୍ୟ ସତ୍ୟ ପ୍ରତି ଏପରି ନିଷ୍ଠାପର ବ୍ୟକ୍ତିଙ୍କୁ ଦେଖିବାକୁ କାହାର ମନ ନ ବଳେ ? ଓକିଲଙ୍କ ସଙ୍ଗେ ମକଦ୍ଦମା ସମ୍ବନ୍ଧରେ ୫ ମିନିଟ କଥାବାର୍ତ୍ତା କଲେ ବା ୫ ମିନିଟ ସକାଶେ ଓକିଲଙ୍କୁ କାଗଜ ପତ୍ର ଦେଖାଇଲେ, ସଲାମୀ ଦେବାକୁ ହୁଏ । କିନ୍ତୁ ମୁଁ ଅନେକ ଲୋକଙ୍କ ମୁଖରୁ ଶୁଣିଛି ଯେ, ଟିକିଏ ମକଦ୍ଦମାର କାଗଜ ପତ୍ର ଦେଖାଇବା ବା ସେ ସମ୍ବନ୍ଧରେ ପରାମର୍ଶ ନେବା ପରେ ନରେନ୍ଦ୍ର ବାବୁଙ୍କୁ ଟଙ୍କା ଯାଚିଲେ ସେ କହନ୍ତି, "ଏଥିରେ ତ ମୋର ଶ୍ରମ ବୋଧ ନାହିଁ । ଶ୍ରମଲବ୍ଧ ଧନ ନୋହିଲେ ଭୋଗ କରିବି କିପରି ?" ଏହା କହି ସେ ଟଙ୍କା ଫେରାଇ ଦିଅନ୍ତି; ଶତ ଅନୁରୋଧରେ ମଧ୍ୟ ତାହା ଗ୍ରହଣ କରନ୍ତି

ନାହିଁ । ଶୁଣିଥିଲି, ଯେତେବେଳେ ସେ କଟକରେ ପ୍ରଥମ ପଦାର୍ପଣ କରନ୍ତି, ସେତେବେଳେ କଟକରେ ଡାକ୍ତରଖାନା ଅଦୌ ନ ଥିଲା । ଡାକ୍ତର ବା କବିରାଜ ମଧ୍ୟ ନ ଥିଲେ । ନରେନ୍ଦ୍ର ବାବୁ କଟକରେ ଯଥେଷ୍ଟ ଡାକ୍ତର ଓ ଡାକ୍ତରଖାନା ନ ହେବା ପର୍ଯ୍ୟନ୍ତ ନିଜ ହସ୍ତରେ ହୋମିଓପାଥିକ ବାକ୍ସ ଧରି ଶତ୍ରୁ ମିତ୍ର ସମସ୍ତଙ୍କ ଗୃହରେ ଦିନ ନାହିଁ ରାତି ନାହିଁ ଅକାତରରେ କପର୍ଦ୍ଦକ ମାତ୍ର କାହାରିଠାରୁ ନ ନେଇ ରୋଗୀର ସେବା ଶୁଶ୍ରୂଷା କରିଅଛନ୍ତି । ପ୍ରକୃତରେ ନରେନ୍ଦ୍ର ବାବୁଙ୍କର ଶତ୍ରୁ ବୋଲି କେହି ନ ଥିଲେ, ତେବେ ତାଙ୍କର ସତ୍ୟନିଷ୍ଠା ଯୋଗୁଁ ଯଦି କାହାର ସ୍ୱାର୍ଥ ନଷ୍ଟ ହୋଇଥାଏ, ସେ ତାହାଙ୍କୁ ଶତ୍ରୁ ବୋଲି ଭାବିଥିବେ; କିନ୍ତୁ ନରେନ୍ଦ୍ରବାବୁ ଶତ୍ରୁର ବିପଦ ସମୟରେ ତାହାଙ୍କୁ ଦେଖାଇ ଅଛନ୍ତି ଯେ, ସେ ଶତ୍ରୁ ତ ନୁହନ୍ତି ବରଂ ତାହାର ପରମ ମିତ୍ର ।

ଯେଉଁଦିନ ନରେନ୍ଦ୍ର ବାବୁଙ୍କ ଗୃହରେ ସନ୍ଧ୍ୟାସମୟରେ ପହଞ୍ଚିଲୁ, ସେ ଦିନ ସେ ସତ୍ୟନିଷ୍ଠ ମୂର୍ତ୍ତି ଦେଖି ପଙ୍କିଳ ମନ ଅନ୍ତତଃ କ୍ଷଣକ ପାଇଁ ପବିତ୍ର ହୋଇଗଲା । ଦେଖିଲୁଁ, ଗୋଟିଏ ଓଡ଼ିଆ ପିଲା ଜାମା ପିନ୍ଧି ଆମ୍ଭମାନଙ୍କୁ ସମ୍ବର୍ଦ୍ଧନା କରୁଅଛି । ନରେନ୍ଦ୍ର ବାବୁ ତା ପ୍ରତି 'ତୁ' ପରିବର୍ତ୍ତେ 'ତୁମେ' ବ୍ୟବହାର କରୁଅଛନ୍ତି । ବାଳକଟିର ବୟସ ପ୍ରାୟ ବାର ବର୍ଷ । ଶୁଣିଲୁଁ, ସେ ବାଳକଟି ମାତୃହୀନ । ଦିନେ ଶୋଥ ଓ ଉଦର-ପୀଡ଼ାରେ ଅତ୍ୟନ୍ତ ପୀଡ଼ିତ ହୋଇ ସେ ବାବୁଙ୍କ ଗୃହକୁ ଭିକ୍ଷା ମାଗି ଆସିଥିଲା । ବାବୁ ମହୋଦୟ ତାହାଙ୍କୁ ମାତୃହୀନ ଜାଣି ଓ ଭିକ୍ଷା କରିବାରେ ଅସମର୍ଥ ଦେଖି ଔଷଧାଦି ପ୍ରୟୋଗ କରି ତାହାଙ୍କୁ ସୁସ୍ଥ କରିବେ ବୋଲି ଆପଣାର ଗୃହରେ ସ୍ଥାନ ଦେଇଥିଲେ । ବାଳକ ଆଜି ଶାରୀରିକ ଆରୋଗ୍ୟ ଲାଭ କରି ମାନସିକ ଆରୋଗ୍ୟ ଲାଭ କରିବାରେ ମଧ୍ୟ ଅଗ୍ରସର । ତାଙ୍କ ମୁଖରୁ ବାଳକଟିର ବୃତ୍ତାନ୍ତ ଶୁଣି ଆମ୍ଭେମାନେ ମୁଗ୍ଧ ହୋଇଗଲୁଁ । ବିଶ୍ୱନାଥ ବାବୁଙ୍କ ସହିତ ନାନା କଥା ହେଉ ହେଉ ନରେନ୍ଦ୍ର ବାବୁ ଆପଣାର

ସତ୍ୟପ୍ରିୟତାର ମୂଳ କାରଣ କହି ବସିଲେ । ତାଙ୍କର ସେ କଥା ଶୁଣିବାପାଇଁ ଆମ୍ଭେମାନେ ଅତ୍ୟନ୍ତ ଉଦ୍‌ଗ୍ରୀବ । ନରେନ୍ଦ୍ର ବାବୁ କହିଲେ, "ଏ ମୁହଁରୁ ଆଉ କପରି ମିଛ କଥା ବାହାରିବ ? ବାଲ୍ୟକାଳରେ ଥରେ ସାମାନ୍ୟ ମିଥ୍ୟା କଥା କହିଥିଲି ବୋଲି ମା ଦୁଇଦିନ ମୋ ମୁହଁ ଅଡ଼କୁ ଅନାଇଁ ନ ଥିଲେ । ମୁଁ ଯେ ସେ କେତେଦିନ କି ଯନ୍ତ୍ରଣା ଅନୁଭବ କରିଛି, ତାହା ଆଜୀବନ ଭୁଲିବି ନାହିଁ । ଆଉ ମିଛ କଥା କପରି କହିବ ?" ଏହି କଥା କହୁ କହୁ ତାହାଙ୍କର ନୟନଯୁଗଳ ବାଷ୍ପାଗତ ଓ ମୁଖପଦ୍ମ ଭକ୍ତିଗୌରବର ବିକଶିତ ହେଉଥାଏ । ସତ୍ୟ ତାହାର ସମସ୍ତ ଦୀପ୍ତିରେ ଯେପରି ନରେନ୍ଦ୍ର ବାବୁଙ୍କ ମୁଖାରବିନ୍ଦକୁ ପ୍ରଦୀପ୍ତ କରୁଥାଏ । ତାଙ୍କ ମୁହଁରୁ ସେ କଥା ଶୁଣି ଆମ୍ଭମାନଙ୍କର ଲୋମ ଠାଙ୍କୁରି ଉଠୁଥାଏ । ମନେ ମନେ ଭାବୁଥାଉଁ, ଆମ୍ଭେମାନେ ଯେ ନରେନ୍ଦ୍ର ବାବୁଙ୍କର ଗୁଣର ଏତେ ପ୍ରଶଂସା ଶୁଣିଥାଉଁ, ନରେନ୍ଦ୍ର ବାବୁଙ୍କର ଯେ ସତ୍ୟପ୍ରତି ଏପରି ଅଟଳ ନିଷ୍ଠା; ନରେନ୍ଦ୍ର ବାବୁ ଯେ ଆଜି ଦେବୋପମ ଜୀବନ ବହନ କରି ଓକିଲମହଲରେ ମଧ୍ୟ ସତ୍ୟର ସ୍ତମ୍ଭ ସ୍ୱରୂପ ଦଣ୍ଡାୟମାନ; ଏ ସମସ୍ତ କେବଳ ତାଙ୍କର ଜନନୀଙ୍କ ପାଇଁ । ଧନ୍ୟ ଜନନି ! ଧନ୍ୟ ଜାତକ ! ଏ ଭଳି ଜନନୀ ହେଲେ ସିନା ଦେଶର ଦୁଃଖ ଦୂର ହେବ ? ଦେଶ ପ୍ରକୃତ ମନୁଷ୍ୟମାନଙ୍କର ଆବାସସ୍ଥଳୀ ହେବ ? ଜାପାନୀ-ମାତା ଓ ସାର ସୟଦ୍ ଅହମ୍ମଦଙ୍କ ମାତାଙ୍କ ସମ୍ବନ୍ଧରେ ଆମ୍ଭେମାନେ ଇତିପୂର୍ବେ କହି ଯାଇଅଛୁଁ; ଏଠାରେ ସେ ସମ୍ବନ୍ଧରେ ପୁନରୁଲ୍ଲେଖ ଅନାବଶ୍ୟକ ।

ଯେଉଁମାନେ ହୃଦୟମୟୀ, ସ୍ନେହମୟୀ, ବୃଟିଶ ଜଗଜ୍ଜନନୀ ମହାରାଣୀ ଭିକ୍ଟୋରିୟାଙ୍କ ରାଜତ୍ୱ ସମ୍ଭୋଗ କରିଅଛନ୍ତି, ସେମାନେ ନିଶ୍ଚୟ ଭାଗ୍ୟବାନ୍ । ମୁଁ ମଧ୍ୟ ସେହି ଭାଗ୍ୟବାନମାନଙ୍କ ମଧ୍ୟରୁ ଜଣେ । ସେ ମାତୃ-ଶାସନରେ ଯେ ପରିପାଳିତ ହୋଇଅଛି, ସେ ମାତୃସ୍ନେହ ଯାହାର ହୃଦୟକୁ ସ୍ପର୍ଶ କରିଅଛି, ସେ କୋମଳ କଥା ଯାହାର କର୍ଣ୍ଣକୁହରରେ ପ୍ରବେଶ କରିଅଛି,

ସେ ଅଦ୍ଭ ମହାରାଣୀ ଭିକ୍ଟୋରିଯାଙ୍କୁ ଭୂଲିବ କପରି ? ବହୁକାଳ ଅତୀତ ହେଲଣି, ତଥାପି ଭାରତର ଲୋକସାଧାରଣ ଜାଣନ୍ତି ଯେ, ସେମାନେ ମହାରାଣୀ ଭିକ୍ଟୋରିଯାଙ୍କ ରାଜତ୍ୱରେ ବାସ କରୁଅଛନ୍ତି । ଯେ ପ୍ରାଣ ପରପାଇଁ କାନ୍ଦେ, ପରପ୍ରାଣ ତାକୁ ଭୂଲିବ କପରି ? ସିପାହିବିଦ୍ରୋହ ପରେ ମହାରାଣୀ ଭିକ୍ଟୋରିଯାଙ୍କ ଭାରତରେ ଘୋଷଣାପତ୍ରର ଖସଡ଼ା ପ୍ରସ୍ତୁତ କରିବାର ଭାର ଲର୍ଡ ଡର୍ବିଙ୍କ ଉପରେ ଦଆଯାଇଥିଲା । କନ୍ତୁ ଲର୍ଡ ଡର୍ବିଙ୍କ ଖସଡ଼ା ମନୋମତ ନ ହେବାରୁ ମହାରାଣୀ ଲର୍ଡ ମାମେଶବେରିଙ୍କୁ ଅନୁରୋଧ କରି ଲେଖିଥିଲେ, "ଲର୍ଡ ଡର୍ବିଙ୍କୁ ବୁଝାଇଦେବେ ଯେ, ଏପରି ଘୋର ଅନ୍ତର୍ବିଦ୍ରୋହ ଅର୍ଥାତ୍ ସିପାହିବିଦ୍ରୋହ ପରେ ମୁଁ ଭାରତର ଶାସନଭାର ନିଜ ହସ୍ତରେ ଗ୍ରହଣ କରିବାକୁ ଉଦ୍ୟତ । ଲର୍ଡ ଡର୍ବି ଏକଥା ଭୂଲିବେ ନାହିଁ ଯେ ନାରୀହୃଦୟରୁ ଏ ଘୋଷଣା ଭାରତର ଲକ୍ଷ ଲକ୍ଷ ଲୋକଙ୍କ ନିକଟକୁ ଯାଉଅଛି; ସୁତରାଂ ଲର୍ଡ ଡର୍ବି ତାଙ୍କର ସ୍ୱଭାବମଧୁର ସୁନ୍ଦର ଭାଷାରେ ଘୋଷଣାପତ୍ରଟି ଲେଖିଦେଲେ ବଡ଼ ଆନନ୍ଦର ବିଷୟ ହେବ । ସେ ଘୋଷଣାପତ୍ରରୁ ଭାରତସନ୍ତାନ ଯେପରି ମୋର ଦୟା, ଦାକ୍ଷିଣ୍ୟ ଓ ଧର୍ମଭାବ ଜାଣି ପାରିବେ ଏବଂ ଅଧିକନ୍ତୁ ମଧ୍ୟ ଜାଣିବେ ଯେ ସଭ୍ୟତାଲୋକ ପ୍ରାପ୍ତି ସଙ୍ଗେ ସଙ୍ଗେ ଭାରତ ପ୍ରଜା ମଧ୍ୟ ବ୍ରିଟିଶପ୍ରଜା ସହିତ ସମଭାବରେ ସୁବିଧା ସୁଯୋଗ ପାଇ ପାରିବେ ।" ଯେଉଁମାନେ ଇଂରାଜୀ ପଢ଼ି ବୁଝି ପାରିବେ, ସେମାନଙ୍କପାଇଁ ମହାରାଣୀଙ୍କର ୧୮୫୮ ସାଲ ଅଗଷ୍ଟ ମାସ ୧୫ ତାରିଖର ମୂଳ ପତ୍ର ଖଣ୍ଡିକ ଏଠାରେ ଉଦ୍ଧୃତ କରିବାର ଲୋଭ ସମ୍ଭାଳ ପାରିଲୁ ନାହିଁ । Earl of Derby ଙ୍କ ନିକଟକୁ ମହାରାଣୀଙ୍କ ପତ୍ର ଏହି :—

"The Queen has asked Lord Malmesbury to explain in detail to Lord Durby her objection to the draft of Proclamation for India.

The Queen would be glad if Lord Durby would write it himself in his excellent language, bearing in mind that it is a female Sovereign who speaks to more than 100,000,000, of Eastern people on assuming the direct Government over them after a bloody Civil war, giving them pledges which her future reign is to redeem, and explaining the principles of her Government. Such a document should breathe feelings of generosity, benevolence, and religious feeling, pointing out the privileges which the Indians will receive in being placed on an equality with the subjects of British Crown and the prosperity following in the train of civilisation."

ଯେଉଁମାନେ ମହାରାଣୀଙ୍କ ଜୀବନବୃତ୍ତାନ୍ତ ପାଠ କରୁଅଛନ୍ତି, ସେମାନେ ଜାଣନ୍ତି ଯେ, ସେହି ବ୍ରିଟିଶ ରାଜ୍ୟ-ଜନନୀ ଉପର ନାନେ ପରିଶ୍ରମ କରି ନିଜର ପରିଶ୍ରମଲବ୍ଧ ଅର୍ଥରେ ଜୀବିକା ନିର୍ବାହ କରୁଥିଲେ । ଏପରି ଜନନୀ ପାଇଥିଲେ ବୋଲି ସମ୍ରାଟ୍ ସପ୍ତମ ଏଡ଼ୱାର୍ଡ଼ ଶାନ୍ତି-ପ୍ରତିଷ୍ଠାତା (Peace-maker) ବୋଲି ସୁଖ୍ୟାତି ଅର୍ଜନ କରିଅଛନ୍ତି ଏବଂ ତାଙ୍କର ସଞ୍ଚିତ ପୁଣ୍ୟରୁ ଆଜି ଆମ୍ଭମାନଙ୍କ ମହାମହିମାନ୍ୱିତ ସମ୍ରାଟ୍ ପଞ୍ଚମ ଜର୍ଜ ଘୋର ବିପଦର ଝଞ୍ଜାବାତରେ ମଧ୍ୟ ଅଚଳ, ଅଟଳ । ଆଜି ସେହି ମାତାଙ୍କ ଆଶ୍ୱାସବାଣୀକୁ* ସମ୍ବଳ କରି ଭାରତର ପ୍ରଜାପୁଞ୍ଜ ଶାନ୍ତିରେ ବାସ କରୁ-

---

* "When, by the blessing of Providence internal tranquility shall be restored, it is our earnest desire to stimulate the peaceful indus-

ଅଛନ୍ତି ଓ ଉତ୍ତରୋତ୍ତର ଉନ୍ନତିପଥରେ ଧାଉଁଅଛନ୍ତି । ବାସ୍ତବିକ, ଏକା ମାତୃହୃଦୟରୁ ସିନା ପୁତ୍ରକନ୍ୟାମାନଙ୍କ ପ୍ରତି ଏପରି କୋମଳ ଆଶ୍ୱାସପ୍ରଦ ସ୍ନେହମୟୀ ବାଣୀ ବାହାରି ପାରେ ।

ଅମ୍ଭେମାନେ ସୁମାତାଙ୍କର ଆଉ ଗୋଟିଏ ଉଦାହରଣ ଦେଇ 'ମଧୁରେଣ ସମାପୟେତ୍' ବିଧିବାକ୍ୟ ପାଳନ କରିବୁଁ । ଶ୍ରୀଗୌରାଙ୍ଗ ସନ୍ନ୍ୟାସ ଅବଲମ୍ବନ କରି ଶ୍ରୀ ଅଦ୍ୱୈତାଚାର୍ଯ୍ୟଙ୍କ ଗୃହରେ ଅବସ୍ଥାନ କରୁଅଛନ୍ତି । ଶଚୀମାତା ପୁତ୍ରଙ୍କର ସେ ମୁଣ୍ଡିତ ମସ୍ତକ ଦେଖି ବିକଳ ଓ ବିହ୍ୱଳ । ତଥାପି ପୁତ୍ରର ମଙ୍ଗଳ ଭୁଲି ପାରି ନାହାନ୍ତି । ପୁତ୍ର ମାତାଙ୍କୁ ଛାଡ଼ି ବୃନ୍ଦାବନ, ନୀଳାଚଳ ପ୍ରଭୃତି ତୀର୍ଥଯାତ୍ରା କରିବେ । ମାତା କଣ ସେଥିରେ ଅସନ୍ତୁଷ୍ଟ ? ନା ନା, ଶଚୀମାତା ପୁତ୍ରର ମଙ୍ଗଳ କାମନା କରି କହୁଅଛନ୍ତି,

"ଆପନାର ସୁଖ ଦୁଃଖ ତାହା ନାହିଁ ଗଣି ।
ତାଁର ଯେଇ ସୁଖ ତାହା ନିଜ ସୁଖ ମାନି ॥"

ଅର୍ଥାତ୍ ଯହିଁରେ ପୁତ୍ରର ସୁଖ, ତହିଁରେ ମୋର ସୁଖ । ମୁଁ ନିଜର ସୁଖଦୁଃଖ ପ୍ରତି ଭ୍ରୂକ୍ଷେପ କରେଁ ନାହିଁ । ଏହିପରି ସ୍ୱାର୍ଥତ୍ୟାଗହିଁ ସୁମାତାର ଲକ୍ଷଣ । ସୁମାତା କେବେହେଁ ମୋହାନ୍ଧ ନୁହନ୍ତି; ସେ ନିଜର ପ୍ରାଣ ବିନିମୟରେ ସୁଦ୍ଧା ପୁତ୍ରର ଯଥାର୍ଥ ମଙ୍ଗଳ କାମନା କରନ୍ତି ।

---

try in India, to promote works of public utility and improvement, and to administer the Government for the benefit of our subjects resident therein. In their prosperity will be our strength, in their contentment our security, and in their gratitude our best regard. And may the God of all power grant to us, and to those in authority under us, strength to carry out these our wishes for the good of our people."

# ସପ୍ତମ ଅଧ୍ୟାୟ

## କୁମାତା ।

"A weak mother × × who treats the same offence now with severity and now with leniency, as the passing humour dictates is laying up miseries for herself and her children."

Herbert Spencer.

ଶ୍ରୀଶଙ୍କର କହିଅଛନ୍ତି । "କୁପୁତ୍ରୋ ଜାୟେତ, କ୍ୱଚଦପି କୁମାତା ନ ଭବତି", ଅର୍ଥାତ୍ କୁପୁତ୍ର ଦେଖାଯାନ୍ତି—କିନ୍ତୁ କୁମାତା କଦାପି ଦେଖାଯାନ୍ତି ନାହିଁ । ଏ ବିଶ୍ୱ-ରଙ୍ଗଅଖାଡାରେ ଏ କଥା ଅନେକାଂଶରେ ସତ୍ୟ ହେଲେ ମଧ୍ୟ ସମ୍ପୂର୍ଣ୍ଣ ସତ୍ୟ ନୁହେ । ଏ ବିଶ୍ୱ ଭଲମନ୍ଦର ମିଶ୍ରଣରେ ନିର୍ମିତ; ସୁତରାଂ ଏଥିରେ କୌଣସି ପ୍ରକାର କାଣ୍ଡ ଅସମ୍ଭବ-ଏପରି ଭାବିବା ଭ୍ରାନ୍ତି । ଏଠାରେ ସବୁ ସମ୍ଭବ । ମନୁଷ୍ୟମଧ୍ୟରେ ରିପୁମାନେ ବାସ କରି କେତେବେଳେ କେଉଁ ଅନର୍ଥ ଘଟାଉଅଛନ୍ତି ତାହା ସ୍ଥିର କରିବା ଦୁଃସାଧ୍ୟ । ଜନନୀ କେତେବେଳେ ହେଲେ ପୁତ୍ରପ୍ରତି ନିଷ୍ଠୁର ବା ପୈଶାଚିକ ବ୍ୟବହାର ନ କରିବା ସ୍ୱାଭାବିକ; କିନ୍ତୁ ଏହି ରିପୁମାନେ ସ୍ୱଭାବକୁ ପରାସ୍ତ କରି ଯେତେବେଳେ ଆପଣାର ଆଧିପତ୍ୟ ବିସ୍ତାର କରନ୍ତି, ସେତେବେଳେ ସ୍ୱାଭାବିକ କଥା ଅସ୍ୱାଭାବିକ କାଣ୍ଡରେ ପରିଣତ ହୁଏ । ରିପୁବର୍ଗ ପିତାକୁ ରାକ୍ଷସ ଓ ମାତାକୁ ରାକ୍ଷସୀରେ ପରିଣତ କରନ୍ତି । କିନ୍ତୁ ଦୟାମୟ ବିଧାତାଙ୍କ ବିଧାନରେ ଏପରି ଦୃଶ୍ୟ ବହୁଳ ନୁହେ ।

ଆମ୍ଭେମାନେ ଅନେକ ସମୟରେ ଦେଖିଥାଉଁ ଓ ଶୁଣିଥାଉଁ ଯେ, ଜନନୀ ପୁତ୍ରକୁ ବିଦ୍ୟାଶିକ୍ଷା ନିମିତ୍ତ ପାଖଛଡ଼ା କରିବାକୁ ନାରାଜ । ପୁତ୍ର

ବରଂ ମୂର୍ଖ ହେଉ, କିନ୍ତୁ ହୃଦ୍‌ମାଝ ହୃଦ୍‌ରେ ଦେଇ ପାଖରେ ଥାଉ, ଆମ୍ଭେମାନେ ତାହାକୁ ଦେଖି ସୁଖୀ ହେଉଁ—ଏହା ଅନେକ ପିତାଙ୍କର ବିଶେଷତଃ ମାତାମାନଙ୍କର ଆନ୍ତରିକ ଇଚ୍ଛା । ସେମାନଙ୍କର ଦୋଷ ବା କଣ ? ମୋହାଚ୍ଛନ୍ନ ସ୍ନେହର ବଶବର୍ତ୍ତୀ ହୋଇ ସେମାନେ ସେପରି କରିଥାନ୍ତି । ସମାଜ ଯେଉଁଠାରେ କାପୁରୁଷର ଅଜ୍ଞାନତମକୁ ଉତ୍ତରୋତ୍ତର ନ ବଢ଼ାଇ ତାହା ଦୂର କରିବାରେ ପ୍ରୟାସୀ, ସେଠାରେ ଏପରି ବିଚାର କଥା ଶୁଣାଯାଏ ନାହିଁ । ସେଠାରେ ବରଂ ଅଜ୍ଞ ପୁତ୍ର ମାତାର ଚକ୍ଷୁଃଶୂଳ ହୋଇଥାଏ ।

ଏଠାରେ ଗୋଟିଏ ବଡ଼ ଗୁରୁତର କଥାର ଅବତାରଣା କରିବୁଁ । ଅନେକ ଜନନୀ ଅଜ୍ଞତା ବା ଅଧୀରତାର ବଶବର୍ତ୍ତୀ ହୋଇ ସେମାନଙ୍କ ଶିଶୁକୁ କ୍ରନ୍ଦନରୁ ବିରତ କରିବାକୁ ଯାଇ ଭୂତ ପ୍ରେତ ଇତ୍ୟାଦିର ଭୟ ଦେଖାଇଥାନ୍ତି । ଏହା ଯେ କୁମାତାର କାର୍ଯ୍ୟ ତାହା ବୋଲିବା ବାହୁଲ୍ୟ ମାତ୍ର । ତଦ୍ୱାରା ସନ୍ତାନସନ୍ତତିଙ୍କ ମନରେ ଭୟ ଏପରି ବଦ୍ଧମୂଳ ହୁଏ ଯେ, ଆଜୀବନ ତାହା ମନକୁ ଅଧିକାର କରେ ଏବଂ ଜନନୀ ନିଜ ପୁତ୍ରକୁ ସୁପୁରୁଷ କରିବା ଚେଷ୍ଟାରେ ଥାଇ, ତାହାକୁ କାପୁରୁଷରୂପେ ଗଠନ କରନ୍ତି । ସନ୍ତାନସନ୍ତତିଙ୍କର ପିତୃତ୍ୱ ଓ ମାତୃତ୍ୱ ଗ୍ରହଣ କରିବା ସାମାନ୍ୟ ଦାୟିତ୍ୱର କାର୍ଯ୍ୟ ନୁହେ । ଯେଉଁ ମାତାମାନେ ଶିଶୁର ସାମାନ୍ୟ ଟିକିଏ ଅଳି ବା କ୍ରନ୍ଦନ ସହ୍ୟ କରି ପାରନ୍ତି ନାହିଁ, କିମ୍ବା ନିଜର ବୁଦ୍ଧିର ଅଭାବରୁ ସଦୁପାୟରେ କ୍ରନ୍ଦନରତ ଶିଶୁକୁ କ୍ରନ୍ଦନରୁ ବିରତ କରି ପାରନ୍ତି ନାହିଁ, ସେମାନଙ୍କୁ ସୁମାତା କହିବାକୁ କଷ୍ଟ ବୋଧ ହୁଏ ।

ଅନେକ ସମୟରେ ଦେଖାଯାଏ ଯେ, ମାତା ବର୍ତ୍ତମାନ ଯେଉଁ ଦୋଷ ସକାଶେ ପୁତ୍ରକୁ ଦଣ୍ଡ ଦେଉଅଛନ୍ତି, ପରକ୍ଷଣରେ ପୁଣି ସେହି ପ୍ରକାର ଦୋଷ ସେହି ପୁତ୍ର ବା ଅନ୍ୟ ପୁତ୍ରଠାରେ ଦେଖି ମଧ୍ୟ ଦଣ୍ଡବିଧାନ

କିମ୍ବା ତାହାଙ୍କୁ ଦଣ୍ଡବିଧାନ କରିବା ସଙ୍ଗେ ସଙ୍ଗେ ପୁଣି ଆଦର କରିବାକୁ ଲାଗିଲେ; ଏହିପରି ଅସଙ୍ଗତ ବ୍ୟବହାର ଯେଉଁମାନେ ପୁତ୍ର କନ୍ୟା ପ୍ରତି ପ୍ରଦର୍ଶନ କରନ୍ତି, ସେମାନେ ନିଜର ଓ ପୁତ୍ରର ଭାବୀ ଦୁଃଖର କାରଣ ହୁଅନ୍ତି । କାରଣ ପୁତ୍ରକନ୍ୟାମାନେ ଏପରି ମାତାଙ୍କ ପ୍ରତି ପ୍ରାୟ ଅବାଧ ହେବା ଦେଖାଯାଏ । ଏଥିପାଇଁ ମାତା ସମ୍ପୂର୍ଣ୍ଣରୂପେ ଦାୟୀ ।

କାମରୂପର କପାଳକବଳରେ ପଡ଼ି କେତେକ ଗର୍ଭଧାରିଣୀଙ୍କ ସନ୍ତାନ-ପ୍ରତି ପୈଶାଚିକ ବ୍ୟବହାର ଏହି ପୃଥିବୀବକ୍ଷରେ ଦୃଷ୍ଟ ହୋଇଅଛି । କିନ୍ତୁ ପୁନର୍ବାର କହୁଅଛୁଁ, ଏପରି ଘଟନା ବହୁଳ ନୁହେ; ପୁତ୍ରସ୍ନେହ ଏତେ ପ୍ରବଳବେଗରେ ମାତୃହୃଦୟରେ ପ୍ରବାହିତ ହୁଏ ଯେ, ଅନ୍ୟାନ୍ୟ ମାୟା ମମତା ତୃଣଗୁଚ୍ଛ ପରି ସେ ସ୍ରୋତରେ କେଉଁଆଡ଼େ ଭାସିଯାଏ । କିନ୍ତୁ ଯେଉଁଠାରେ ଅନ୍ୟାନ୍ୟ ମାୟା ମମତା ମାତୃସ୍ନେହକୁ ଗ୍ରାସ କରୁଅଛି, ଜାଣିବାକୁ ହେବ ଯେ, ସେ ହୃଦୟପ୍ରକୋଷ୍ଠରେ ମୁହୂର୍ତ୍ତକ ଲାଗି ଜ୍ଞାନାଲୋକ ପ୍ରଜ୍ୱଳିତ ହୋଇ ନାହିଁ, ତାହା ନିରନ୍ତର ତମସାଚ୍ଛନ୍ନ ।

ମାତା କୁପଥଗାମିନୀ ହେଲେ ପୁତ୍ର ଯେ କୁପଥଗାମୀ ହେବ ଏହା "ଦସ୍ୟୁ ଓ ତାହାର ମାତା" ନାମକ ଗଳ୍ପ ଯେଉଁମାନେ ଜାଣନ୍ତି, ସେମାନେ ଉତ୍ତମରୂପେ ହୃଦୟଙ୍ଗମ କରି ପାରିଥିବେ । ଆମ୍ଭେମାନେ ସର୍ବସାଧାରଣଙ୍କ ଅବଗତିନିମିତ୍ତ ଏହି ଗଳ୍ପଟି ଏଠାରେ ବିବୃତ କରୁଅଛୁଁ । ଥରେ ଗୋଟିଏ ସ୍ୱଳ୍ପବୟସ୍କ ବାଳକ ଆପଣାର ସହାଧ୍ୟାୟୀର ଖଣ୍ଡିଏ ପୁସ୍ତକ ଚୋରି କରି ମାଙ୍କ ନିକଟକୁ ନେଇ ଆସିଲା । ମା ବିନା ପଇସାରେ ବହି ଖଣ୍ଡିକ ପାଇ ଆନନ୍ଦିତ ହେଲେ ଏବଂ ପୁତ୍ରକୁ ଏହିପରି କାର୍ଯ୍ୟରେ ଉତ୍ସାହ ଦେଲେ । ପୁତ୍ର ଚୌର୍ଯ୍ୟବୃତ୍ତିରେ ପଟୁତା ଲାଭ କରି ମାତାଙ୍କ ହସ୍ତରେ ବହୁସାମଗ୍ରୀ ଦେବାକୁ ଲାଗିଲା । ମାତାଙ୍କର ଆନନ୍ଦର ସୀମା ନାହିଁ, କିନ୍ତୁ ସେ ଭୁଲିଗଲେ ଯେ, ଚୋରର ଘର ଚିରକାଳ ରହେ ନାହିଁ ।

ଯୌବନକାଳରେ ପୁତ୍ର କୌଣସି ପଦାର୍ଥ ଚୋରି କରି ଦଣ୍ଡଭୋଗ ପାଇଁ ନୀତ ହେବାବେଳେ ତାହାର ମାତା ବକ୍ଷରେ କରାଘାତ କରୁଥାନ୍ତି । ପୁତ୍ର ମାତାଙ୍କୁ କିଛି କହିବାପାଇଁ ରାଜପୁରୁଷମାନଙ୍କଠାରୁ ଅନୁମତି ଗ୍ରହଣ କଲା । ସେ ମାତାଙ୍କ ନିକଟକୁ ଯାଇ ତାହାଙ୍କୁ ଗୋଟିଏ ଗୋପନୀୟ କଥା କହିବା-ଛଳରେ ଏପରିଭାବରେ ତାହାଙ୍କର କାନଟି କାମୁଡ଼ିଦେଲା ଯେ, ସେ ଅଧୀର ହୋଇ କାନ୍ଦିବାକୁ ଲାଗିଲା । ଏହା ଦେଖି ରାଜପୁରୁଷମାନେ ପୁତ୍ରକୁ ତୀବ୍ର ଭର୍ତ୍ସନା କରନ୍ତେ ସେ କହିଲା "ମା ଯଦି ବହି ଚୋରି କଲାବେଳେ ମୋତେ ଏ କାର୍ଯ୍ୟରେ ଉତ୍ସାହିତ ନ କରି ବେତ୍ରାଘାତ କରିଥାନ୍ତେ, ତେବେ ମୋର ଏପରି ଦଣ୍ଡ ହୋଇ ନଥାନ୍ତା । ମାତାହିଁ ମୋର ଧ୍ୱଂସର କାରଣ ।" ସମସ୍ତେ ଏହା ଶୁଣି ଦୁଃଖ ପରିବର୍ତ୍ତେ ବରଂ ସୁଖ ଅନୁଭବ କଲେ । ବାସ୍ତବିକ ମାତା ପୁତ୍ରକୁ କୁଶିକ୍ଷା ଦେଲେ, ପୃଥିବୀରେ ଅନ୍ୟ କେହି ସୁଶିକ୍ଷା ଦେଇ ତାହାକୁ ସୁପଥକୁ ଆଣି ପାରିବ କି?

ଗୋଟିଏ ବଡ଼ ଅଦ୍ଭୁତ କଥା ଅନେକେ ପ୍ରତ୍ୟକ୍ଷ କରିଥାନ୍ତି । ପୁତ୍ର ବିବାହିତ ନୋହିବାପାଏ ଯେଉଁ ମାତାଙ୍କୁ ରାତ୍ରିରେ ନିଦ୍ରା ହୁଏ ନାହିଁ । ପୁତ୍ର ବିବାହରେ ଅନିଚ୍ଛା ପ୍ରକାଶ କଲେ ଯେଉଁ ମାତା ଜୀବନପର୍ଯ୍ୟନ୍ତ ବିସର୍ଜନ କରିବାକୁ ପ୍ରସ୍ତୁତ ହୁଅନ୍ତି, ପୁତ୍ରର ବିବାହପ୍ରସଙ୍ଗ ଯେନ ଯେଉଁ ମାତାଙ୍କର ସମସ୍ୟା ପାଣିପରି କେଉଁଆଡ଼େ ବୋହିଯାଏ, ସେହି ମାତା ପୁଣି ପୁତ୍ର ବିବାହିତ ହେବା ପରେ ଶାଶୁବୋହୂ କଳିର ପ୍ରଧାନ ଅଗ୍ରନେତ୍ରୀ ହେବାର ଦୃଶ୍ୟ ସ୍ଥାନେ ସ୍ଥାନେ ଦେଖାଯାଏ । ଏପରି କି ଅନେକ ସ୍ଥଳରେ ନବାଗତା ପୁତ୍ରବଧୂ ଆତ୍ମହତ୍ୟା କରିବା ଛଡ଼ା ଅନ୍ୟ ଉପାୟ ପାଆନ୍ତି ନାହିଁ । କାରଣାନୁସନ୍ଧାନ କଷ୍ଟକର ନୁହେ । ଯେଉଁ ମାତା ଏତେଦିନ ନିଜ ସ୍ନେହର ପ୍ରତିଦାନ ପୁତ୍ର ନିକଟରୁ ନ ପାଇ ସନ୍ତୁଷ୍ଟ ଥିଲେ, ସେ ଏବେ ନବାଗତା ବାଳିକାପ୍ରତି ପୁତ୍ରର ମମତା ଦେଖି ଈର୍ଷାନ୍ୱିତ ହୋଇ ପଡ଼ନ୍ତି । ସେ ଭାବନ୍ତି, "କାଲି ସକାଳେ ପରଗୃହରୁ ଗୋଟାଏ ବାଳିକା

ଆସି ଏହାର ଏତେ ଆପଣାର ହୋଇଗଲା, ଆମ୍ଭେମାନେ ନିଜ ଦେହର ରକ୍ତରେ ପୋଷଣ କରି ଏହାର ପର ହୋଇଗଲୁଁ ! ଦୋଷ ପୁତ୍ରର ନୁହେଁ, ପୁତ୍ରବଧୂ ନିଶ୍ଚୟ ଏଥିନିମିତ୍ତ ଦାୟୀ । କାରଣ ତାହାର ଶିକ୍ଷାରେ ପଡ଼ି ମୋ, ପୁତ୍ର ମୋ ପ୍ରତି ଉଦାସୀନ ।’’ କୁମାତା ନ ହେଲେ ଏପରି ଭାବନ୍ତି ନାହିଁ । କାରଣ ସୁମାତା ବୁଝି ପାରନ୍ତି ଯେ, ଯେ ଯାହାଠାରୁ ବଡ଼ ସେ ତାହାକୁ ସ୍ନେହ କରେ । ମୁଁ ମୋ ପୁତ୍ରଠାରୁ ବଡ଼ ବୋଲି ମୋର ସ୍ନେହ ତାହା ଆଡ଼କୁ ଯାଏ; ମୋର ପୁତ୍ର ମୋର ପୁତ୍ରବଧୂଠାରୁ ବଡ଼ ବୋଲି ତାହାର ସ୍ନେହ ତାହାର ସ୍ତ୍ରୀ ପ୍ରତି ସ୍ୱଭାବତଃ ପ୍ରଧାବିତ ହୁଏ । ପୁଣି ପୁତ୍ରବଧୂ ମୋର ପର ନୁହେ; ପୁତ୍ର ଯଦି ମୋର ଆପଣାର ହେଲା, ତାହାର ସ୍ତ୍ରୀ କି ମୋର ପର ? ଏହି ସମସ୍ତ କଥା ଭାବି ସୁମାତା ବରଂ ନବାଗତା ପୁତ୍ରବଧୂର ସମସ୍ତ ଦୋଷ କ୍ଷମା କରି ତାହାର ମାତୃବିରହ ଦୁଃଖ ଭୁଲାଇ ନିଜେ ତାହାର ମାତୃସ୍ଥଳରେ ଅଭିଷିକ୍ତା ହୁଅନ୍ତି ଏବଂ ପୁତ୍ରବଧୂର ଚକ୍ଷୁଃଶୂଳ ହେବା ପରିବର୍ତ୍ତରେ ତାହାର ଶ୍ରଦ୍ଧାଭକ୍ତିର ପାତ୍ର ହୋଇ ଗୃହମଧ୍ୟରେ ଅଧିଷ୍ଠାତ୍ରୀ ଦେବୀରୂପେ ଶାନ୍ତିରକ୍ଷା କରନ୍ତି । ଗୃହର ଏପରି ଅଧିଷ୍ଠାତ୍ରୀ ଦେବୀଙ୍କୁ ସମସ୍ତେ ପୂଜା ଓ ସମ୍ମାନ କରନ୍ତି ଏବଂ ଯେ କୌଣସି ଗୋଳମାଳ ତାହାଙ୍କର ଭ୍ରୂକୁଟିମାତ୍ରକେ ତୁଟିଯାଏ ।

କେବଳ ବିଶ୍ୱବିଦ୍ୟାଳୟର ଡିଗ୍ରୀଧାରିଣୀ ହେଲେ ସୁମାତା ପ୍ରସ୍ତୁତ ହେବେ ନାହିଁ; ସେଥିପାଇଁ ଗୃହଶିକ୍ଷା ସର୍ବାଦୌ ପ୍ରୟୋଜନୀୟ । ବିଶ୍ୱ-ବିଦ୍ୟାଳୟର ଡିଗ୍ରୀ ପାଇଲେ ସ୍ତ୍ରୀମାନଙ୍କର ଗର୍ବ ଓ ଅହଙ୍କାର ବୃଦ୍ଧି ପାଇବାର ଆଶଙ୍କା ଅଛି, କିନ୍ତୁ ଗୃହଶିକ୍ଷା ସୁନ୍ଦରଭାବରେ ପାଇଲେ ସେପରି ଆଶଙ୍କା ଆଦୌ ନାହିଁ । ତେବେ ଗୃହଲକ୍ଷ୍ମୀ ପ୍ରସ୍ତୁତ କରିବାର ଅନୁକୂଳ ପୃଥକ୍ ବିଶ୍ୱବିଦ୍ୟାଳୟ ଯଦି ସ୍ତ୍ରୀମାନଙ୍କ ନିମନ୍ତେ ପ୍ରତିଷ୍ଠିତ ହୁଏ ଏବଂ ସ୍ତ୍ରୀଶିକ୍ଷାକୁ କାର୍ଯ୍ୟକାରୀ କରିବାପାଇଁ ଯଦି ଉଦ୍ୟୋକ୍ତା-

ମାନଙ୍କର ଉଦ୍ୟୋଗରେ ତ୍ରୁଟି ନ ଥାଏ, ତେବେ ସେପରି ବିଶ୍ୱବିଦ୍ୟାଳୟ ଶିକ୍ଷାରେ ମଧ୍ୟ ସୁଫଳ ଫଳିବାର ସମ୍ଭାବନା ଅଛି । ଯାହାହେଉ, ଭୂମାତାଙ୍କୁ ସୁମାତା କରିବାପାଇଁ ଯେ ସୁଶିକ୍ଷାର ଏକାନ୍ତ ପ୍ରୟୋଜନ ଏ କଥାର ଦ୍ୱିରୁକ୍ତି ଅନାବଶ୍ୟକ ।

# ଅଷ୍ଟମ ଅଧ୍ୟାୟ

## ସୁପୁତ୍ର

ଯେଉଁ ପୁତ୍ର ଆପଣାର କର୍ତ୍ତବ୍ୟପାଳନଦ୍ୱାରା ପିତା ମାତାଙ୍କର ସନ୍ତୋଷ ବିଧାନ କରେ, ପିତା ମାତା ଓ ମାତୃଭୂମିକୁ ଗୌରବାନ୍ୱିତ କରେ ଏବଂ ଯାହାର ଜୀବନ ଲୋକକଲ୍ୟାଣର ନିଦାନସ୍ୱରୂପ, ସେହି ଏକା ସୁପୁତ୍ର ।

ସୁପୁତ୍ର ହେବାକୁ ଗଲେ ଯେ ଯେ କର୍ତ୍ତବ୍ୟ ପାଳନୀୟ ଆମ୍ଭେମାନେ ଅଳ୍ପ କଥାରେ ତାହା ଏଠାରେ କହୁ ଅଛୁଁ ।

ପ୍ରଥମତଃ, ବୁଦ୍ଧି ହେବା ମାତ୍ରେ ମାତାଙ୍କୁ ଦେବୀଜ୍ଞାନରେ ପ୍ରୀତି ଓ ଭକ୍ତି କରିବା ପୁତ୍ରର କର୍ତ୍ତବ୍ୟ । ଏ ସଂସାରରେ ଯେ ମାତାଙ୍କ ବିରାଗଭାଜନ, ସେ ନରାଧମ ଏବଂ ଅନ୍ୟ କାହାର ଅନୁରାଗଭାଜନ ହେବା ତାହା ପକ୍ଷରେ ଅସମ୍ଭବ । ଯଦ୍ଦ୍ୱାରା ମାତାଙ୍କର ବିରକ୍ତି ଜନ୍ମିବା ସମ୍ଭବପର, ପୁତ୍ର ସେପରି କାର୍ଯ୍ୟରୁ ଦୂରରେ ରହିବେ ।

ଦ୍ୱିତୀୟତଃ, ଏ ପୃଥିବୀରେ ଯେତେବେଳେ ମାତାଙ୍କଠାରୁ ଅଧିକ ମଙ୍ଗଳାକାଙ୍କ୍ଷୀ ଅନ୍ୟ କେହି ନାହାନ୍ତି, ସେତେବେଳେ ପୁତ୍ର ଅନ୍ୟଠାରୁ ଯେଉଁ ଆଦେଶ ଉପଦେଶାଦି ଗ୍ରହଣ କରିବ, ସେ ସମସ୍ତ ପାଳନ କରିବା ପୂର୍ବେ ହିଁ ଏ ମାତାଙ୍କୁ ଜଣାଇ ତାହାଙ୍କର ଅନୁମୋଦନ ଗ୍ରହଣ କରି ପାଳନ କରିବ । ତେବେ ବିପଦର ଆଶଙ୍କା ନ ଥିବ । ମାତାଙ୍କର ଶାସନ କୋମଳ ବୋଲି ତାହା ପ୍ରତି ଅନାସ୍ଥା ପ୍ରଦର୍ଶନ କରିବା ମୂର୍ଖର କାର୍ଯ୍ୟ । ସେହି କୋମଳ ଶାସନାଧୀନରେ ଆପଣାକୁ ଚଳାଇ ପୁତ୍ର ସୁଖରେ କାଳଯାପନ କରିବ ।

ତୃତୀୟତଃ, ପୁତ୍ର ବିବାହିତ ହେବାମାତ୍ରକେ ଅତି ସାବଧାନତା ସହିତ ମାତାଙ୍କ ପ୍ରତି ବ୍ୟବହାର କରିବ । ମାତା ଜୀବିତ ଥିବା ଯାଏ ନିଜେ ତାଙ୍କର ଦାସ ହେବ ଏବଂ ନିଜର ସ୍ତ୍ରୀଙ୍କୁ ଦାସୀ ରୂପରେ ମାତାଙ୍କର

ସେବାରେ ନିଯୁକ୍ତ କରିବ । ନିଜ ସ୍ତ୍ରୀର ପକ୍ଷପାତୀ ହୋଇ ଅତି ସାମାନ୍ୟ କଥା ମଧ୍ୟ ପୁତ୍ର ମାତାଙ୍କ ଆଗରେ କହିବ ନାହିଁ ଏବଂ ମାତା କ କହିଲେ ସ୍ତ୍ରୀର ସକଳ ସୁଖ ସ୍ୱାଚ୍ଛନ୍ଦ୍ୟ ବିଧାନରେ ସଙ୍କୁଚିତ ହେବ ଅନେକ ଯୁବକ ଅଧୀର ହୋଇ ମାତାଙ୍କର ଆଦେଶ ପର୍ଯ୍ୟନ୍ତ ଅପେକ୍ଷା କରି ନ ପାରି ସ୍ତ୍ରୀର ମନଃକାମନା ପୂରଣରେ ରତ ହୁଅନ୍ତି । ମାତାଙ୍କର ଅନୁମତି ନୋହିବା ଯାଏ ସେଥିରୁ ବିରତ ହେବା ଧୀମାନ୍ ବ୍ୟକ୍ତିର କର୍ତ୍ତବ୍ୟ । ପ୍ରତ୍ୟେକ ବୁଦ୍ଧିମାନ୍ ଅନୁଭବୀ ଏ କଥା ଅନୁଭବ କରିଅଛନ୍ତି ଯେ, ନିଜର ପ୍ରିୟବସ୍ତୁର ଆଦର ନିଜେ କରିବାଦ୍ୱାରା ଯେଉଁ ଆନନ୍ଦ ଜାତ ହୁଏ, ଅପର ଲୋକେ ତାହାର ଆଦର କଲେ ତଦ୍ଦ୍ୱାରା ଅଧିକ ଆନନ୍ଦ ମିଳେ । ସୁତରାଂ ସୁପୁତ୍ର ନିଜର ସ୍ତ୍ରୀ ଓ ସନ୍ତାନାଦିଙ୍କୁ ଆଦର-କରିବା ନିଜର ପିତାମାତାଙ୍କ ଉପରେ ଦେଇ ନିଜେ ସାନନ୍ଦମନରେ ତାହା ଦେଖୁଥିବେ ଏବଂ ସୁଖ ସମ୍ଭୋଗ କରୁଥିବେ । ଅନ୍ୟ କାହାର ଅଭାବ ମୋଚନ କରିବା ପୂର୍ବରୁ ପିତାମାତାଙ୍କ ଅଭାବ ମୋଚନ କରିବା ସୁପୁତ୍ରର ସର୍ବପ୍ରଧାନ କର୍ତ୍ତବ୍ୟ ।

ଚତୁର୍ଥତଃ, ସ୍ୱୋପାର୍ଜିତ ଯାବତୀୟ ଅର୍ଥ ଆଣି ପିତା କିମ୍ବା ମାତାଙ୍କ ଶ୍ରୀଚରଣତଳେ ଅର୍ପଣ କରିବାକୁ ହେବ । କେହି କେହି ପିତା ମାତାଙ୍କ ଜୀବନକାଳରେ ପ୍ରଣୟିନୀଙ୍କ କରକମଳରେ ସମସ୍ତ ଉତ୍ସର୍ଗ କରନ୍ତି । ସୁପୁତ୍ର କଦାପି ଏ କାଣ୍ଡ କରିବେ ନାହିଁ । ପିତା ମାତା ଅନୁମତି ଦେଲେ ପୁତ୍ର ନିଜ ନିକଟରେ କିମ୍ବା ସ୍ତ୍ରୀ ନିକଟରେ ଉକ୍ତ ଅର୍ଥ ଗଚ୍ଛିତ ରଖି ପାରନ୍ତି ।

ପଞ୍ଚମତଃ, ପିତା ମାତା ଯେତିକି ବୃଦ୍ଧ ହେଉଥିବେ—ପୁତ୍ର ସେତିକି ତାଙ୍କର ସୁଖସ୍ୱାଚ୍ଛନ୍ଦ୍ୟ ବିଧାନରେ ଅନ୍ୟଙ୍କୁ ନିଯୁକ୍ତ ନ କରି ନିଜେ ନିଯୁକ୍ତ ହେଉଥିବେ । କାରଣ ବୃଦ୍ଧ ବା ବୃଦ୍ଧାଙ୍କର ଆଦର ଅନ୍ୟମାନଙ୍କ ନିକଟରେ ହ୍ରାସ ପାଇବା ସ୍ୱାଭାବିକ; ସୁତରାଂ ପୁତ୍ର ବୃଦ୍ଧ ପିତାମାତାଙ୍କ କାର୍ଯ୍ୟ ନିଜେ ସମ୍ପନ୍ନ କରି ଅକ୍ଷୟ ପୁଣ୍ୟ ଓ ଅକ୍ଷୟ କୀର୍ତ୍ତିର ଅଧିକାରୀ ହେବେ ।

ବସ୍ତୁତଃ, ପୁତ୍ର ବିଧବା ମାତାଙ୍କ ପ୍ରତି ଏପରି ବ୍ୟବହାର କରିବେ, ଯଦ୍ଦ୍ୱାରା ମୃତପତିଙ୍କର ଅନୁଶୋଚନାରେ ତାହାଙ୍କୁ ବାରମ୍ବାର ବ୍ୟଥିତ ହେବାକୁ ନ ହେବ । ପରନ୍ତୁ ସେ ପୁତ୍ରର ଶ୍ରଦ୍ଧାପୂର୍ଣ୍ଣ ବ୍ୟବହାରରେ ଯେପରି ବୈଧବ୍ୟଯନ୍ତ୍ରଣା ଅନ୍ତତଃ କିୟତ୍‌ପରିମାଣରେ ବିସ୍ମୃତ ହୁଅନ୍ତି ।

ପରିଶେଷରେ ଏତିକି କହିଲେ ଯଥେଷ୍ଟ ହେବ ଯେ ପୁତ୍ର ଆପଣାର ଅବାଧତା, ଅନବଧାନତା, ଉଦାସୀନତା, ଅବହେଳା ବା ଆଳସ୍ୟର ବଶବର୍ତ୍ତୀ ହୋଇ ପିତା ମାତାଙ୍କ ପ୍ରତି କୌଣସି କର୍ତ୍ତବ୍ୟରେ ତ୍ରୁଟି କରିବେ ନାହିଁ ।

ପାଣ୍ଡବମାନେ ସୁପୁତ୍ର ବୋଲି ମହାଭାରତ ପ୍ରସିଦ୍ଧ । ବାସ୍ତବିକ ବନବାସ କାଳରେ ମଧ୍ୟ ସେମାନେ ମାତାଙ୍କୁ ଛାଡ଼ି ରହି ନାହାନ୍ତି । ଘୋର ବନବାସ କଷ୍ଟରେ ପଡ଼ି ସୁଦ୍ଧା, ଯୁଧିଷ୍ଠିର, ଭୀମ, ଅର୍ଜ୍ଜୁନ, ନକୁଳ ଓ ସହଦେବ ଯେପରି ମାତାଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ରଖିଥିଲେ, ନିଷ୍କଣ୍ଟକାବସ୍ଥାରେ ଥାଇ ମଧ୍ୟ ସାଧାରଣତଃ ପୁତ୍ରମାନଙ୍କ ଜନନୀ ପ୍ରତି ସେପରି ବ୍ୟବହାର ଦେଖାଯାଏ ନାହିଁ । ଏପରି କି ପଦବ୍ରଜରେ ମାତାଙ୍କର କ୍ଳାନ୍ତି ପରିଲକ୍ଷିତ ହେଲେ ପାଣ୍ଡବମାନେ ତାହାଙ୍କୁ ସ୍କନ୍ଧରେ ବସାଇ ଆପଣାର କର୍ତ୍ତବ୍ୟ ପାଳନ କରିଅଛନ୍ତି ।

ଗୋଟିଏ କଥାରୁ ପାଣ୍ଡବମାନଙ୍କ ମାତୃଭକ୍ତି ସୁସ୍ପଷ୍ଟ ହେବ । ଯେତେ-ବେଳେ ଅର୍ଜ୍ଜୁନ ଶରଭେଦ କରି ଦ୍ରୌପଦୀଙ୍କୁ ଲାଭ କଲେ ସେତେବେଳେ ଦ୍ରୌପଦୀ ଏକା ତାଙ୍କର ଭୋଗ୍ୟ କି ନା ଏ ବିଷୟର ମୀମାଂସା ଜନନୀଙ୍କ ଉପରେ ନ୍ୟସ୍ତ ହେଲା । ସମସ୍ତେ ଜନନୀଙ୍କୁ ଯାଇ କହିଲେ, "ଅର୍ଜ୍ଜୁନ ଗୋଟିଏ ଫଳ ଲାଭ କରିଅଛି । ଆମ୍ଭେମାନେ ତାହାକୁ ସମସ୍ତେ ସମ୍ଭୋଗ କରିବା ନା ଅର୍ଜ୍ଜୁନ ଏକାକୀ ତାହା ଭୋଗ କରିବ ?" ମାତା ଶୁଣି ସଚକିତ ହୋଇ ଉତ୍ତର କଲେ, "ସେ କି କଥା, ସେ ଯାହା ଆଣିଛି, ପାଞ୍ଚଭାଇ ମିଳିମିଶି ଭୋଗ କରିବ — ଅର୍ଜ୍ଜୁନ ଏକାକୀ ଭୋଗ କରିବ କାହିଁକି ?"

ଅର୍ଜ୍ଜୁନଙ୍କର ସେଥିରେ ମୁଖମ୍ଳାନ ପଡ଼ିବା ଦେଖିକି ଥାଇ, ସେ ମହା-
ନନ୍ଦରେ କୃଷ୍ଣଙ୍କୁ ସେ କଥା ଜ୍ଞାପନ କଲେ ଏବଂ ମାତୃଆଜ୍ଞା ସମସ୍ତେ
ଶିରୋଧାର୍ଯ୍ୟ କଲେ । ଏଡ଼େବଡ଼ ଧାର୍ମିକ ଯୁଧିଷ୍ଠିର ମଧ୍ୟ ମାତୃବାକ୍ୟର
ନ୍ୟାଯ୍ୟାନ୍ୟାଯ୍ୟ ବିଚାର କରିବାକୁ ପ୍ରବୃତ୍ତ ନ ହୋଇ ବେଦବାକ୍ୟ ପରି
ତାହା ସ୍ୱୀକାର କଲେ । ଅର୍ଜୁନ ଏକାକୀ ଦ୍ରୌପଦୀଙ୍କ ପାଣିଗ୍ରହଣ
କରିଥିଲେ ଭାଇମାନେ ଅର୍ଦ୍ଧେ ଅସନ୍ତୁଷ୍ଟ ବା କ୍ଷୁଣ୍ଣ ହୋଇ
ନ ଥାନ୍ତେ । ତଥାପି ମାତୃବାକ୍ୟ ପାଳନ କରିବାକୁ ଯାଇ ସମସ୍ତଙ୍କୁ
ଏହି ଅଭିନବ ବ୍ୟାପାର ସ୍ୱୀକାର କରିବାକୁ ହେଲା । ଏହାକୁ କହନ୍ତି
ମାତୃଭକ୍ତି ।

ମାତାଙ୍କର କଷ୍ଟରେ କ୍ଲିଷ୍ଟ ଧ୍ରୁବଙ୍କ କଥା ଆମ୍ଭେମାନେ ପୂର୍ବେ କହି
ସାରିଅଛୁଁ । ଏଠାରେ ବିଶେଷ ଉଲ୍ଲେଖ ନିଷ୍ପ୍ରୟୋଜନ । ତେବେ ଏତିକି
କହିଲେ ଯଥେଷ୍ଟ ହେବ ଯେ ଧ୍ରୁବ ମାତାଙ୍କ ଦୁଃଖରେ ଯେତେ ଦୁଃଖିତ
ହୋଇ ପଡ଼ିଥିଲେ; ନିଜ ପାଇଁ ସେତେ ଦୁଃଖିତ ନ ଥିଲେ । ସେହି ଦୁଃଖ
ଦୂର କରିବା ମାନସରେ ସେ ଯେପରି ଅସାଧ୍ୟ ସାଧନ କରି ହରିଙ୍କୁ ଆପଣାର
ଦୁଃଖ ଜଣାଇ ନିଜର, ନିଜ ଜନନୀ ଓ ଜନକଙ୍କର ଦୁଃଖ ଚିରକାଳ
ସକାଶେ ଅପନୋଦନ କରିଥିଲେ ତାହା ଭାବିଲେ କେଉଁ ହୃଦୟବାନ୍ ବ୍ୟକ୍ତି
ବାଳକ ଧ୍ରୁବଙ୍କୁ ଆଲିଙ୍ଗନ କରିବାକୁ ଇଚ୍ଛା ନ କରିବ ? ଧ୍ରୁବଙ୍କର
ହରି ଅନ୍ୱେଷଣ, ବିଶେଷତଃ ମାତୃଦୁଃଖ ଦୂରୀକରଣାର୍ଥ ହରି ଅନ୍ୱେଷଣ
ବଡ଼ ହୃଦୟସ୍ପର୍ଶୀ । ଧ୍ରୁବ ପରି ପୁତ୍ର ହେଲେ କେବଳ ପିତା ମାତା
କାହିଁକି—ଲୋକ ସମାଜର ମଧ୍ୟ ଦୁଃଖ ଦୂର ହୁଏ ।

ଏହି ତ ଗଲା ହିନ୍ଦୁ ପୁରାଣର କଥା । ଗ୍ରୀକ୍ ପୁରାଣରେ ମଧ୍ୟ ଏପରି
ମାତୃଭକ୍ତ ସନ୍ତାନଙ୍କର ଅଭାବ ନାହିଁ । ଆମ୍ଭେମାନେ ଏଠାରେ ଜଣକର
କଥା କହିବୁଁ । ସମ୍ଭ୍ରାନ୍ତ ଶିକ୍ଷିତ ବ୍ୟକ୍ତିମାନେ ପରସିଉସ୍ (Perseus ଙ୍କ

ନାମ ପ୍ରାପ୍ତ ସମସ୍ତେ ଶୁଣି ଅଛନ୍ତି ଏବଂ ତାଙ୍କ ବିଷୟରେ ଅନେକ କଥା ପଢ଼ି ଅଛନ୍ତି ।

ଅର୍ଗସ ଉପତ୍ୟକାରେ ଏକ୍ରିସସ୍ ଓ ପ୍ରିଟସ୍ ନାମରେ ରାଜପୁତ୍ର ସହୋଦରଦ୍ୱୟ ରାଜତ୍ୱ କରୁଥିଲେ । ଏକ୍ରିସସ୍ ନିଜ ଭ୍ରାତାଙ୍କ ବିପକ୍ଷରେ ପ୍ରଥମରେ ବିଦ୍ରୋହୀ ହୋଇ ତାହାଙ୍କୁ ଦେଶରୁ ବିତାଡ଼ିତ କଲେ । ଭବିଷ୍ୟତ ବାଣୀ ହେଲା "ତୁମ୍ଭେ ନିଜର ଶୋଣିତ-ସମ୍ପର୍କ ବିପକ୍ଷରେ ବିଦ୍ରୋହୀ ହୋଇଅଛ; ସୁତରାଂ ତୁମ୍ଭେ ମଧ୍ୟ ତୁମ୍ଭର ଦୌହିତ୍ର କର୍ତ୍ତୃକ ନିହତ ହେବ ।" ତେଣୁ ସେ ସ୍ୱୀୟ କନ୍ୟା ତେନିଙ୍କୁ ସଦ୍ୟଃପ୍ରସୂତ ଶିଶୁ ସହିତ ଗୋଟିଏ ସିନ୍ଦୁକରେ ପୁରାଇ ସାଗରରେ ଭସାଇଦେଲେ । ଡିକ୍ଟିସ୍ ନାମରେ ସେରିଫସ୍ ଦ୍ୱୀପବାସୀ ଜନୈକ ବୃଦ୍ଧ ଧୀବର ସେ ସିନ୍ଦୁକ ସହିତ ମାତାପୁତ୍ରଙ୍କୁ ନିଜ ଘରକୁ ଘେନି ଯାଇ ତେନିଙ୍କୁ ଆପଣାର ଦୁହିତା ଏବଂ ପାର୍-ସିଉସ୍‌ଙ୍କୁ ଆପଣାର ଦୌହିତ୍ରରୂପେ ଲାଳନ ପାଳନ କରିବାକୁ ଲାଗିଲେ । ପାରସିଉସ୍ ବୟଃପ୍ରାପ୍ତ ହୋଇ ଦୂରଦେଶକୁ ନାବିକର କାର୍ଯ୍ୟ କରିବାକୁ ଗଲେ । ଏଣେ ଉକ୍ତ ଦ୍ୱୀପର ରାଜା ଡିକ୍ଟିସ୍‌ଙ୍କ ଭ୍ରାତା ଅତ୍ୟାଗୃହୀ ପଲି-ଡିକ୍ଟିସ୍‌ଙ୍କ କବଳରେ ତେନିଙ୍କୁ ପଡ଼ିବାକୁ ହେଲା । ସେ ତେନିଙ୍କର ପାଣିଗ୍ରହଣ କରିବାପାଇଁ ବ୍ୟଗ୍ର ହୋଇ ପଡ଼ିଲେ । କିନ୍ତୁ ସାଧ୍ୱୀ ତେନି ସେଥିରେ ସମ୍ମତ ହେଲେ ନାହିଁ—ସୁତରାଂ ବହୁ ଲାଞ୍ଛନା ତାଡ଼ନା ସହ୍ୟ କଲେ । ଅବଶେଷରେ ପନର ବର୍ଷ ପରେ ମାତା ପୁତ୍ରଙ୍କର ସାକ୍ଷାତ୍କାର ହେଲା । ସ୍ୱଚକ୍ଷୁରେ ମାତାଙ୍କ ଦୁଃଖଦୁର୍ଦ୍ଦଶା ଅବଲୋକନ କରି ମୁର୍ଖ କ୍ରୋଧରେ ଅଧୀର ହୋଇ ପଡ଼ିଲେ । ପଲିଡିକ୍ଟିସ୍ କର୍ତ୍ତୃକ ମାତାଙ୍କର ଅପମାନ-କାହାଣୀ ଶ୍ରବଣ କରି ପାରସିଉସ ପ୍ରତିହିଂସାନଳରେ ଜର୍ଜ୍ଜରିତ ହେବାକୁ ଲାଗିଲେ । ପାର୍‌ସିଉସ୍ ଥିବାଯାଏ ରାଜାଙ୍କର ଦୁରଭିସନ୍ଧି କାର୍ଯ୍ୟରେ ପରିଣତ ହୋଇ ପାରିବ ନାହିଁ ବୋଲି ସେ ପାରସିଉସ୍‌ଙ୍କୁ ରାଜ୍ୟରୁ ବିଦାୟ କରିବାର ଗୋଟିଏ ଉପାୟ ଉଦ୍ଭାବନ କଲେ । ଦିନେ

ସେ ଗୋଟିଏ ଦରବାର କରି ସମସ୍ତ ପ୍ରଧାନ ପ୍ରଧାନ ଲୋକଙ୍କ ସହିତ ପାର୍ସିଉସ୍‌ଙ୍କୁ ମଧ୍ୟ ନିମନ୍ତ୍ରଣ କଲେ । ସମସ୍ତେ କିଛି କିଛି ଉପଢୌକନ ନେଇ ଦରବାରକୁ ଯାଇଥିଲେ । ପାର୍ସିଉସ୍ ରିକ୍ତ ହସ୍ତରେ ଯାଇଥିବାରୁ ଅପମାନିତ ହୋଇ ହଠାତ୍ ପ୍ରତିଜ୍ଞା କରି ପକାଇଲେ, "ମୁଁ ଆପଣଙ୍କୁ ଯେଉଁ ଉପହାର ଦେବି, ଏପରି ଉପହାର କେହି କେବେ ଦେଇ ପାରିବେ ନାହିଁ ।" ପ୍ରଶ୍ନ ହେଲା, "କି ଉପହାର ଦେବ ?" ବୀର ପୁରୁଷ କହିଲେ "ରାକ୍ଷସୀର ମସ୍ତକ ।" ଏହି ପ୍ରତିଜ୍ଞା ରକ୍ଷା କରିବା ନିମିତ୍ତ ସେ ଦେବୀ ଡିଆନାଙ୍କ ଶରଣାପନ୍ନ ହେଲେ ।

ଦେବୀ ସ୍ୱପ୍ନରେ ଇତିପୂର୍ବେ ଥରେ ପାର୍ସିଉସ୍‌ଙ୍କୁ ମେଡୁସା ନାମକ ରାକ୍ଷସୀର ମସ୍ତକ ଦେଖାଇଥିଲେ । ବର୍ତ୍ତମାନ ସେହି ରାକ୍ଷସୀର ମସ୍ତକ ରାଜାଙ୍କୁ ଉପହାର ଦେବେ ବୋଲି ପାରସିଉସ୍ ଦୃଢ଼ସଂକଳ୍ପ ହେଲେ । କିନ୍ତୁ ଦେବୀଙ୍କଠାରୁ ଶୁଣିଲେ ଯେ ସେ ରାକ୍ଷସୀର ମସ୍ତକ ଆଣିବାକୁ ଗଲେ ପୃଥିବୀରେ ଯେତେ ପ୍ରକାର ବିପଦର ସମ୍ଭାବନା ଅଛି, ସେ ସମସ୍ତ ବିପଦର ସମ୍ମୁଖୀନ ହେବାକୁ ହେବ । ଦେବ, ଗନ୍ଧର୍ବ, କିନ୍ନର, ରାକ୍ଷସ ପ୍ରଭୃତି ସମସ୍ତଙ୍କର ସହାୟତା ନେଇ ସେହି ଦୁରୂହ କାର୍ଯ୍ୟ ସମ୍ପନ୍ନ କରିବାକୁ ହେବ । ପାର୍ସିଉସ୍ ତାହା ଶୁଣି ନିଜର ଜୀବନକୁ ସମ୍ପୂର୍ଣ୍ଣ ବିପନ୍ନ ମନେ କଲେ । କିନ୍ତୁ ତାହାଙ୍କ ପରି ସୁପୁତ୍ର ମାତାଙ୍କର ଅପମାନ ଜୀବନରେ ସହ୍ୟ କରି କିପରି ବିପଦକୁ ପୃଷ୍ଠ ପ୍ରଦର୍ଶନ କରିବେ ? ବହୁବର୍ଷବ୍ୟାପୀ ପରିଶ୍ରମ, କ୍ଲେଶ ଓ ମୃତ୍ୟୁ ଯନ୍ତ୍ରଣା ସହ୍ୟ କରି କୁଳପାବନ ସତ୍ୟପ୍ରତିଜ୍ଞ ପୁତ୍ର ପାରସିଉସ୍ ମେଡୁସା ରାକ୍ଷସୀକୁ ହତ୍ୟାକରି ତାହାର ମସ୍ତକ ନେଇ ଆସିଲେ । ସେହି ରାକ୍ଷସୀର ଚକ୍ଷୁ ଆଡ଼କୁ ଯେଉଁମାନେ ଅନାଉଥିଲେ, ସେମାନେ ସମସ୍ତେ ପ୍ରସ୍ତରରେ ପରିଣତ ହେଉଥିଲେ ସୁତରାଂ ସପାର୍ଷଦ ପଲିଡେକ୍ଟିସ୍‌ଙ୍କୁ ସେହି ମସ୍ତକ ଦେଖାଇଲାକ୍ଷଣି, ସମସ୍ତେ ପ୍ରସ୍ତରରେ ପରିଣତ ହେଲେ । ଲୋକେ ପାର୍ସିଉସ୍‌ଙ୍କ ଏବମ୍ବିଧ ବୀରତ୍ୱସମ୍ବାଦ ଶୁଣି ଧନ୍ୟ

ଧନ୍ୟ କରିବାକୁ ଲାଗିଲେ । କେବଳ ଜନନୀ ଜେନିଙ୍କର ଯେ ଦୁଃଖ ଦୂର ହେଲା ତାହା ନୁହେ । ଜନନୀ ଓ ଜନ୍ମଭୂମି ସମସ୍ତେ ଗୌରବାନ୍ୱିତ ହେଲେ । "କୁଳଂ ପବିତ୍ରଂ ଜନନୀ କୃତାର୍ଥା" ହେଲେ । ପାରସିଜ୍‌ଙ୍କ ପରି ସୁପୁତ୍ର ଯେ ପ୍ରସବ କରନ୍ତି, ସେ ବୀରପ୍ରସବିନୀ । ଜନନୀର ଦୁଃଖ ଦୂରୀକରଣାର୍ଥ ଯେ ଯାବତୀୟ ଦୁର୍ଦ୍ଦଶାକୁ ମଧ୍ୟ ଅଲଙ୍ଘନ କରିପାରେ ସେହି ଏକା ସୁପୁତ୍ର ।

ପୌରାଣିକ ଦୃଷ୍ଟାନ୍ତ ଛାଡ଼ି ଆମ୍ଭେମାନେ ଐତିହାସିକ ବା ଦୈନନ୍ଦିନ ଦୃଷ୍ଟାନ୍ତ କେତେ ଆଲୋଚନା କରିବା ।

ପ୍ରଥମେ ଜ୍ଞାନଶ୍ରେଷ୍ଠ ଶିବାବତାର ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଜୀବନରେ କଣ ଦେଖୁଁ ? ସନ୍ନ୍ୟାସବ୍ରତ ଗ୍ରହଣ କରି ଲୋକକଲ୍ୟାଣ ସାଧନ କରିବେ, ତଥାପି ଜନନୀଙ୍କର ଅନୁମତି ନୋହିଲେ କିପରି କରିବେ ? ପୁଣି କେଉଁ ଜନନୀ ବା ପୁତ୍ରକୁ ସନ୍ନ୍ୟାସ ଗ୍ରହଣରେ ଅନୁମତି ଦେବେ ? ମାତା ପୁତ୍ର ସ୍ନାନାର୍ଥ ନଦୀକୁ ଯାଇ ଅଛନ୍ତି । ମାୟାକୁମ୍ଭୀର ଦର୍ଶନରେ ମାତା ଭୟବିହ୍ୱଳା ହୋଇଗଲେ । ପୁତ୍ର ପ୍ରଶ୍ନ କଲେ, "ମା, ଯଦି ମୋତେ ସନ୍ନ୍ୟାସ ଗ୍ରହଣରେ ଅନୁମତି ଦିଅନ୍ତି ତେବେ ମୋର ଜୀବନ ରହିବ; ନଚେତ୍ ଏହି କୁମ୍ଭୀର ଏହିକ୍ଷଣି ହଠାତ୍ ମୋତେ ଗର୍ଭସାତ୍ କରିବ ! ଶୀଘ୍ର ଅନୁମତି ଦିଅନ୍ତୁ !" ମାତା କରାଳ ମୁଖବ୍ୟାଦାନକାରୀ କୁମ୍ଭୀରକୁ ସମ୍ମୁଖରେ ଦେଖି ତ୍ରସ୍ତ ବ୍ୟସ୍ତ ହୋଇ ଅଗ୍ରପଶ୍ଚାତ୍ ନ ଭାବି ପୁତ୍ରକୁ ସନ୍ନ୍ୟାସ ଗ୍ରହଣରେ ଅନୁମତି ଦେଲେ । ପୁତ୍ର ଅଭିଲଷିତ ଅନୁମତି ପାଇ ମାତାଙ୍କ କଥା ଭାବିବାକୁ ଲାଗିଲେ । ଯେପରି ତାହାଙ୍କର କୌଣସି କଷ୍ଟ ନ ହେବ ତାହାର ଉପାୟ ବିଧାନ କରିଦେଲେ । ଅବଶେଷରେ କହିଲେ, "ମା, କେବେହେଁ ଦୁଃଖିତ ହେବ ନାହିଁ; ମୋତେ ସ୍ମରଣ କରିବା ମାତ୍ରକେ ମୁଁ ତୁମ୍ଭ ସମ୍ମୁଖରେ ଉପସ୍ଥିତ ହେଉଥିବି ।"

ଚୈତନ୍ୟ ଦେବଙ୍କ ଜୀବନରେ ମଧ୍ୟ ସେହି କଥା । ଜୀବକଲ୍ୟାଣ-
ସାଧନପାଇଁ ସନ୍ନ୍ୟାସ ଗ୍ରହଣ କରିବେ । କୌଣସି ମତେ ଜନନୀ ଶଚୀ
ଦେବୀଙ୍କ ନିକଟରୁ ଅନୁମତି ପ୍ରାପ୍ତ ହେଲେ । ସନ୍ନ୍ୟାସ ଗ୍ରହଣ କରି ଶ୍ରୀ
ଗୌରାଙ୍ଗ ନୀଳାଚଳବାସୀ ହେଲେ । କିନ୍ତୁ ପ୍ରତିବର୍ଷ ଥରେ ଲେଖାଏଁ
ନିଜର କୁଶଳସମ୍ବାଦ ସହ ଜଣେକ ଭକ୍ତଙ୍କୁ ନିଜର ଜନନୀଙ୍କ ନିକଟକୁ
ପ୍ରେରଣ କରୁଥିଲେ । ପ୍ରାୟ ସର୍ବଦା ପ୍ରେମୋନ୍ମତ୍ତାବସ୍ଥା—କିନ୍ତୁ ଜନନୀଙ୍କୁ
କେବେହେଁ ଭୁଲି ପାରି ନାହାନ୍ତି । ପୁଣି ଅନେକ ସମୟରେ ଭକ୍ତମାନଙ୍କ
ନିକଟରେ ଦୁଃଖ ପ୍ରକାଶ କରି କହିଅଛନ୍ତି, "ହାୟ ! ଢ ନିଷ୍ଠୁର ସନ୍ନ୍ୟାସ
ଗ୍ରହଣ କଲି ଯେ ମୋର ଦୁଃଖିନୀ ଜନନୀଙ୍କ ଶ୍ରୀଚରଣତଳେ ବସି
ତାଙ୍କର ସେବା ମନ ପୂରାଇ କରି ପାରିଲି ନାହିଁ ।"

ଶ୍ରୀରାମକୃଷ୍ଣ ଦେବଙ୍କ ଜୀବନକୁ ମାତୃମୟ କହିଲେ ଅତ୍ୟୁକ୍ତି ହେବ
ନାହିଁ । ସେ ନିଜର ମାତାଙ୍କଠାରେ ଭକ୍ତି ଆରମ୍ଭ କରି ଜଗନ୍ମାତାଙ୍କ
ପର୍ଯ୍ୟନ୍ତ ସେ ଭକ୍ତିକୁ ପ୍ରସାରିତ କରିଥିଲେ । ନିଜେ ଯେତେବେଳେ
ଭକ୍ତି ଓ ଭକ୍ତ ହୋଇ ଉନ୍ମତ୍ତ, ସେତେବେଳେ ମଧ୍ୟ କାଳେ ମାତାଙ୍କ
ମନରେ କୌଣସି ଦୁଃଖ ହେବ, ସେଥି ସକାଶେ ତାହାଙ୍କୁ ଆଣି ନିଜ
ପାଖରେ ଦକ୍ଷିଣେଶ୍ୱରର ଗୋଟିଏ ଗୃହରେ ରଖିଲେ । ପ୍ରତିଦିନ ଦୁଇଓଳି
ସେହି ଘର ନିକଟକୁ ଯାଇ ମା ମା ବୋଲି ତାଙ୍କ ମାତୃପଦରଜ ମସ୍ତକରେ
ଧାରଣ ଏବଂ କିଞ୍ଚିତ୍ ଆଳାପ କରି ନିଜ କକ୍ଷକୁ ବାହୁଡ଼ି ଆସୁଥିଲେ ।

ଶ୍ରୀରାମକୃଷ୍ଣ ଜୀବନୀପାଠକ ମାତ୍ରେ ଜାଣନ୍ତି ଯେ ଯେତେବେଳେ
ବୃନ୍ଦାବନରେ ଗଙ୍ଗା ମାଈ ନାମକ ସିଦ୍ଧା ପ୍ରବୀଣା ଭକ୍ତିମତୀ ନାରୀ ଶ୍ରୀରାମକୃଷ୍ଣଙ୍କୁ
ଶ୍ରୀରାଧିକାଙ୍କ ବିଗ୍ରହ ବୋଲି ଜାଣି ତାହାଙ୍କୁ ନିଜ ପାଖରେ ରଖି
ଯାବଜ୍ଜୀବନ ତାହାଙ୍କ ସେବା କରିବାପାଇଁ ସ୍ଥିର କଲେ, ସେତେବେଳେ
ଗୋଟିଏ ସୁନ୍ଦର ଘଟଣା ଘଟିଥିଲା । ଏଣେ ଗଙ୍ଗା ମାଈ ଗୋଟିଏ ହାତ
ଧରି ରାମକୃଷ୍ଣଙ୍କୁ ବୃନ୍ଦାବନବାସୀ ହେବାପାଇଁ ଅନୁରୋଧ କରୁଅଛନ୍ତି,

ତେବେଣେ ରାମକୃଷ୍ଣଙ୍କ ଭାଗିନେୟ ଶ୍ରୀହୃଦୟ ମାନଙ୍କୁ କୌଣସିମତେ ଘରକୁ ଫେରାଇ ନେବେ ବୋଲି ଅନ୍ୟ ହସ୍ତଧର ଠାଣୁ ଅଛନ୍ତି । ବାଳକପ୍ରକୃତି ରାମକୃଷ୍ଣ କିଛି ସମୟ ଯାଏ ଠଣା ଓଠାରା ମଧ୍ୟରେ ପଡ଼ି କାହାରିକି କିଛି କହୁ ନାହାନ୍ତି । ଶେଷରେ ନିଜର ଜନନୀଙ୍କ କଥା ମନେ ପଡ଼ିଗଲାରୁ ତାହାଙ୍କୁ ପୁତ୍ର ବିରହ ଦୁଃଖରେ ପକାଇବେ ନାହିଁ ବୋଲି ବୃନ୍ଦାବନରୁ ଫେରିଯିବାର ସ୍ଥିର କଲେ । ତେଣୁ ଗଙ୍ଗାମାଈ ନିରସ୍ତ ହେଲେ ।

ଆଉ ଗୋଟିଏ କଥା । ଶ୍ରୀରାମକୃଷ୍ଣ ବେଦାନ୍ତ ମତରେ ସାଧନ କରିବା ସମୟରେ ତୋତାପୁରି ନାମକ ସିଦ୍ଧ ସାଧୁଙ୍କୁ ଗୁରୁରୂପେ ବରଣ କଲେ । ତୋତାପୁରି ତାହାଙ୍କୁ ସନ୍ନ୍ୟାସର ଦୀକ୍ଷା ଦେଲେ ଏବଂ କହିଲେ, "ବର୍ତ୍ତମାନ କୌପୀନବହିର୍ବାସ ଧାରଣ କରିବାକୁ ହେବ ।" ଶ୍ରୀରାମକୃଷ୍ଣ କହିଲେ, "ଦେଖନ୍ତୁ, ମୁଁ ବହିର୍ବାସ ଧାରଣ କଲେ 'ମୋର ମାତା ପୁତ୍ର ସନ୍ନ୍ୟାସୀ ହୋଇଗଲା' ଭାବି ଅକୁଳ ହୋଇ ପଡ଼ିବେ । ସୁତରାଂ ମୁଁ ଭିତରେ କୌପୀନ ଧାରଣ କରି ବାହାରେ ଯେପରି ସାଧାରଣ ବସ୍ତ୍ର ପରିଧାନ କରୁଅଛି, ସେହିପରି କରେଁ ।" ଗୁରୁ ଶିଷ୍ୟଙ୍କର ମାତୃଭକ୍ତିରେ ପ୍ରୀତ ହୋଇ ଆନନ୍ଦିତ ମନରେ ସେହିପରି କରିବାକୁ ଅନୁମତି ଦେଲେ । ରାମକୃଷ୍ଣ ଦେବ ସ୍ପଷ୍ଟ କହୁଥିଲେ, "ମାତାଙ୍କୁ କଷ୍ଟ ଦେଇ ଯେ ଧର୍ମ କରିବାକୁ ଯାଏ, ତାହାର ଧର୍ମ ତ ହୁଏ ନାହିଁ, ବରଂ ସେ ଅଧର୍ମାଚରଣ କରେ ।"

ସ୍ୱାମୀ ବିବେକାନନ୍ଦଙ୍କ ଜୀବନରେ ଦେଖିଅଛୁଁ ଯେ ସନ୍ନ୍ୟାସୀ ହେବା-ପରେ ଯେଉଁ ଗୁରୁଦକ୍ଷିଣା ଅମେରିକା ପ୍ରଭୃତି ବିଦେଶରୁ ସେ ପ୍ରାପ୍ତ ହୋଇଥିଲେ, ସେଥିରେ ନିଜ ଜନନୀ ଭୁବନେଶ୍ୱରୀ ଦେବୀଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ବିଧାନ କରିଥିଲେ । କାଳେ ବହୁ ଜନପୂର୍ଣ୍ଣ ପରିବାର ମଧ୍ୟରେ ରହି ମାତାଙ୍କର ଧର୍ମ କର୍ମ କରିବାରେ ବାଧା ପଡ଼ିବ, ସେଥିପାଇଁ ସେ ତାହାଙ୍କ ସକାଶେ ଗୋଟିଏ ସ୍ୱତନ୍ତ୍ର ଗୃହ ନିର୍ମାଣ କରିଦେଲେ । ବିବେକାନନ୍ଦଙ୍କର

ପ୍ରାଚ୍ୟ ଓ ବିଶେଷତଃ ପାଶ୍ଚାତ୍ୟ ଶିଷ୍ୟମାନେ ଗୁରୁଙ୍କର ଏପରି ମାତୃଭକ୍ତି ପ୍ରଦର୍ଶନ କରି ସର୍ବଦା ଗୁରୁମାତାଙ୍କର ଅଭାବ ମୋଚନକୁ ଆପଣାର ଗୁରୁସେବା ବୋଲି ଜାଣି ପାରିଥିଲେ ଏବଂ ଯଥାସାଧ୍ୟ ପରୋକ୍ଷ ଏବଂ ପ୍ରତ୍ୟକ୍ଷ ଭାବରେ ତାହାଙ୍କର ସେବା କରୁଥିଲେ ।

ଇଂରାଜ କବି କାଉପର (Cowper) ଙ୍କ ମାତୃପ୍ରୀତି ତାହାଙ୍କ ରଚିତ "On the receipt of my mother's picture" ବା "ମୋର ମାତୃ ପ୍ରତିକୃତି ଦର୍ଶନେ" ନାମକ କବିତାରେ ସୁସ୍ପଷ୍ଟ । ଜନନୀଙ୍କର ପ୍ରତିକୃତି ମାତ୍ର ଦର୍ଶନ କରି ଯାହାଙ୍କର ହୃଦୟ ଏତେ ଉଚ୍ଛୁଳି ପଡ଼ିପାରେ, ସେ ଜନନୀଙ୍କୁ ପ୍ରତ୍ୟକ୍ଷ କରି କେତେ ଆନନ୍ଦ ଲାଭ କରୁ ନ ଥିଲେ ! ମାତାଙ୍କର ପ୍ରତିକୃତି ଦେଖିବା ମାତ୍ରକେ "Oh, that those lips had language !" ଅର୍ଥାତ୍ "ଅହା ! ସେ ମୁଖରୁ କଥା ନିଃସୃତ ହେଉ ଥାନ୍ତା !" ବୋଲି କବିଙ୍କର ଯେଉଁ ଆକ୍ଷେପ ତାହା ଅନୁଭବ କରିବା ମାତ୍ରକେ ହୃଦୟ ତରଳି ଯାଏ । କବି ଆପଣାର ବୃଦ୍ଧାବସ୍ଥାରେ ସେହି ପ୍ରତିକୃତି ପ୍ରାପ୍ତ ହୋଇ କବିତାଟି ଲେଖି ଅଛନ୍ତି । ବାଲ୍ୟକାଳରୁ ସେ ଜନନୀଙ୍କୁ ହରାଇ ଥିଲେ । କିନ୍ତୁ ତାଙ୍କ ପକ୍ଷରେ ଏ କ୍ଷେତ୍ରରେ Out of sight out of mind ଅର୍ଥାତ୍ "ଦୃଷ୍ଟିରୁ ଅନ୍ତର, ମନରୁ ଅନ୍ତର ।" କଥାଟା ସତ୍ୟ ହୋଇ ନାହିଁ । ପ୍ରାୟ ୫୦।୪୦ ବର୍ଷ ପରେ ମାତାଙ୍କର ଛବି ଖଣ୍ଡିକ ଦେଖି ନିଜର ବାଲ୍ୟ କାଳକୁ ପୁଣି ପ୍ରତ୍ୟାବର୍ତ୍ତିତ ହେବାପରି ଅନୁଭବ କଲେ । ସେ ଛବି ଖଣ୍ଡିକ ସତେ ଯେପରି ସ୍ନେହମୟୀ ମାତୃଦେବୀ ରୂପେ ତାହାଙ୍କ ସମ୍ମୁଖରେ ବିଦ୍ୟମାନ । ଶୈଶବ କାଳରେ ଜନନୀଙ୍କର ନିସ୍ୱାର୍ଥ ଯତ୍ନ, ସାନ୍ତ୍ୱନାଦାନ ଏବଂ ପ୍ରେମପୂର୍ଣ୍ଣ ଚୁମ୍ବନ ପ୍ରଭୃତି ସମସ୍ତ ଅନୁଭବ କରିବାକୁ ଲାଗିଲେ । ସ୍ନେହମୟ ପୁତ୍ର ଏତେ କାଳପରେ ମାତୃ ପ୍ରତିକୃତି ନିରୀକ୍ଷଣ କରି କାଳର କ୍ଷମତାକୁ ଭ୍ରୂକୁଟି ନେତ୍ରରେ

ଅନାଇଁ କହୁ ଅଛନ୍ତି, "ସମୟ ଅର୍ଦ୍ଧେ ସିନା କରଛି ଚୋର । ଯାଇଛ, ରଖି ଶକ୍ତି ଶୋକାପହାରୀ ॥" ❊

ବର୍ତ୍ତମାନ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ମାତୃଭକ୍ତି ଆମ୍ଭମାନଙ୍କ ଆଲୋଚ୍ୟ । ତାହାଙ୍କର ମାତୃଭକ୍ତି ଅଳ୍ପ ପ୍ରାୟ ସମସ୍ତଙ୍କୁ ଜଣା କହିଲେ ଚଳେ । ସମସ୍ତେ ଜାଣନ୍ତି ଯେ ସେ ଆପଣାର ପିତାମାତାଙ୍କୁ ଯଥାକ୍ରମେ ହରପାର୍ବତୀ ସ୍ୱରୂପ ଜ୍ଞାନ କରୁଥିଲେ । କେବଳ ଜ୍ଞାନ କରିବା ନୁହେଁ; ସେ କାର୍ଯ୍ୟରେ ଦେଖାଇ ଥିଲେ ଯେ ବାସ୍ତବିକ ଜନନୀଙ୍କ ସ୍ଥାନ ଅତି ଉଚ୍ଚ ଯେ ଯାହାଙ୍କୁ ହୃଦୟରେ ଉଚ୍ଚସ୍ଥାନ ଦିଏ; ସେ ତାହାପାଇଁ ଯଥାର୍ଥ ସ୍ୱାର୍ଥତ୍ୟାଗ କରେ । ଈଶ୍ୱରଚନ୍ଦ୍ର ଯେ ନିଜ ଜନନୀଙ୍କୁ ବାସ୍ତବିକ ପାର୍ବତୀ ପରି ଜ୍ଞାନ କରୁଥିଲେ, ଗୋଟିଏ ଘଟନାରୁ ତାହା ସ୍ପଷ୍ଟରୂପେ ଜଣାଯିବ ।

ଥରେ ମାତାଙ୍କ ନିକଟରୁ ପତ୍ର ଆସିଲା, "ଈଶ୍ୱର, ତୁମ୍ଭେ ଏ ପତ୍ର ପାଇବା ମାତ୍ରକେ ତୁମ୍ଭର ଅନୁଜର ବିବାହରେ ଯୋଗ ଦେବା ସକାଶେ ଶୀଘ୍ର ଆସ । ତୁମ୍ଭେ ନ ଆସିଲେ ବିବାହ ମୋ ପକ୍ଷରେ ଉତ୍ସବମୟ ହେବ ନାହିଁ; ବରଂ ଦୁଃଖଜନକ ହେବ ।" ଈଶ୍ୱରଚନ୍ଦ୍ର ସେତେବେଳେ ଖଣ୍ଡିଏ ବଡ଼ ଚାକିରି କରୁଅଛନ୍ତି । ଅନେକେ ବଡ଼ ଚାକିରି ପାଇଲେ ଚାକିରି ଖଣ୍ଡିକ ହାତରୁ ଖସିଯିବା ଭୟରେ ବଡ଼ ବ୍ୟସ୍ତ ହୁଅନ୍ତି । ଈଶ୍ୱରଚନ୍ଦ୍ରଙ୍କର ସେପରି ଅସ୍ୱାଭାବିକ ଭୟ ନ ଥିଲା । ସେ ମାତୃହୃଦୟରେ ଦୁଃଖ ଦେବେ, ଏ ଭାବନା ସହ୍ୟ କରିବେ କିପରି ? ଶୀଘ୍ର ଛୁଟି ସକାଶେ ଉପରିସ୍ଥ କର୍ମଚାରୀଙ୍କ ନିକଟକୁ ଦରଖାସ୍ତ କଲେ । ଛୁଟି ପ୍ରଥମରେ ନାମଞ୍ଜୁର ହେଲା । ତତ୍କ୍ଷଣାତ୍ ଈଶ୍ୱରଚନ୍ଦ୍ର ବଡ଼ ଚାକିରିରେ

---

❊ Time has but half succeeded in his theft;
Thyself removed, thy power to soothe me left."

ଇସ୍ତଫା ଦାଖଲ କଲେ । ଉପରିସ୍ଥ କର୍ମଚାରୀ ମହୋଦୟ ଈଶ୍ୱରଙ୍କର ଏପରି ମାତୃଭକ୍ତି ଦେଖି ଅଗତ୍ୟା ତାହା ମଞ୍ଜୁର କଲେ । ଏହି ତ ଗଲା ଧନର ମମତା ତ୍ୟାଗ । ପୁଣି ଯେତେବେଳେ କଲିକତା ପରିତ୍ୟାଗ କରି ସ୍ୱଗ୍ରାମାଭିମୁଖରେ ଆସି ଦାମୋଦର ନଦୀ କୂଳରେ ଉପସ୍ଥିତ ହେଲେ, ସେତେବେଳେ ଦେଖିଲେ ଦାମୋଦର ଭୀଷଣଭାବରେ ପ୍ଳାବିତ; ନୌପାରାପାର ବନ୍ଦ । ଅପର ପାରକୁ ଯିବାର ଉପାୟାନ୍ତର ନାହିଁ । ଈଶ୍ୱରଚନ୍ଦ୍ର ଅବିଳମ୍ବେ ଲୁଗାପଟା ବାନ୍ଧି କରାଳଦର୍ଶନ ଦାମୋଦର ବକ୍ଷରେ ଲମ୍ଫ ପ୍ରଦାନ କଲେ ଏବଂ ପ୍ରାୟ ଦୁଇ ମାଇଲ ବିସ୍ତୃତ ଭୀଷଣାକୃତି ନଦୀକୁ ସନ୍ତରଣଦ୍ୱାରା ଅବଲୀଳାକ୍ରମେ ଉତ୍ତୀର୍ଣ୍ଣ ହେଲେ । ଏହିଠାରେ ପ୍ରାଣର ମମତା ତ୍ୟାଗ । ଆହା ! ଧନପ୍ରାଣର ମମତାରେ ଜଳାଞ୍ଜଳି ଦେଇ ଈଶ୍ୱର ଯେତେବେଳେ ମାତୃଶ୍ରୀଚରଣତଳେ ଆର୍ଦ୍ର ଦେହରେ ଉଭା ହେଲେ, ସେତେବେଳେ ମାତାପୁତ୍ରଙ୍କର ହୃଦ୍‌ଗତଭାବ କେବଳ ଅନୁଭବର ବିଷୟ ସିନା ! କବି କେଉଁ ତୂଳିକା ଧରି ତାହା ଚିତ୍ର କରିପାରେ ? ଏହିପରି ସ୍ୱାର୍ଥତ୍ୟାଗ-ମୂର୍ତ୍ତି ମାତୃଭକ୍ତି ହିଁ ପ୍ରକୃତ ମାତୃଭକ୍ତି । ଏପରି ଭକ୍ତି ନ ଥିଲେ ଈଶ୍ୱରଚନ୍ଦ୍ର ଈଶ୍ୱରଚନ୍ଦ୍ର ହୋଇ ପାରିଥାନ୍ତେ କି ?

କଲିକତା ଉଚ୍ଚ ବିଚାରାଳୟ [ High Court ] ର ଭୂତପୂର୍ବ ବିଚାରକ(Justice)କଲିକତା ବିଶ୍ୱବିଦ୍ୟାଳୟର ଭୂତପୂର୍ବ ସହକାରୀ କର୍ତ୍ତା ( Vice-Ceancellor ) ଏବଂ ବଙ୍ଗର ସମୁଜ୍ଜ୍ୱଳ ରତ୍ନ ଶ୍ରୀଗୁରୁଦାସ ବନ୍ଦ୍ୟୋପାଧ୍ୟାୟଙ୍କର ମାତୃଭକ୍ତି ସର୍ବଥା ଅନୁକରଣୀୟ । ନିଜର ଦୈନନ୍ଦିନ ଜୀବନରେ ମାତାଙ୍କର ବିନା ଅନୁମତିରେ ସେ କୌଣସି କାର୍ଯ୍ୟ କରୁ ନ ଥିଲେ । ତାହାଙ୍କ ମାତା ବିଶ୍ୱବିଦ୍ୟାଳୟର ଉପାଧି-ଧାରିଣୀ ବା ବିଦୁଷୀ ନାରୀ ନ ଥିଲେ । ଅନେକ ତଥାକଥିତ ଶିକ୍ଷାପ୍ରାପ୍ତ ପୁତ୍ର ଆପଣାକୁ ମାତାଙ୍କଠାରୁ ବିଦ୍ୱାନ୍ ମନେ କରି ମାତାଙ୍କ ଆଦେଶ ପ୍ରତି ଅନାସ୍ଥାପର ହୋଇଥାନ୍ତି । କିନ୍ତୁ ବାଣୀପୁତ୍ର ଗୁରୁଦାସ ଯେ ମାତାଙ୍କ

ଇଚ୍ଛାନୁଗାମୀ ଥିଲେ, ନିମ୍ନଲିଖିତ ଗୋଟିଏ ଦୃଷ୍ଟାନ୍ତରୁ ତାହା ପ୍ରମାଣିତ ହେବ।

ଥରେ କଲିକତା ଉଚ୍ଚ ବିଚାରାଳୟ (High Court) ର ବିଚାରକ (Justice) ଗୁରୁଦାସ କର୍ମସ୍ଥଳରୁ ପ୍ରତ୍ୟାବର୍ତ୍ତନ କରି ଦେଖିଲେ ଯେ ଜନନୀ ଅନଶନରେ ମ୍ଳାନମୁଖ ହୋଇ ବସିଅଛନ୍ତି। ସେ ମୁଖର ମଳିନତା ପୁତ୍ରଙ୍କର ଅସହ୍ୟ ହୋଇ ପଡ଼ିଲା; କାରଣ ପଶ୍ଚାତ୍‌ରେ ଜାଣିପାରିଲେ ଯେ ଜଣେକ ପ୍ରତିବେଶି ଗୃହରେ ବ୍ରାହ୍ମଣାଭାବରେ ଦେବପୂଜା ହୋଇ ନ ଥିବାରୁ ପ୍ରତିବେଶିନୀ ଅନଶନରେ ରହିଅଛନ୍ତି, ଗୁରୁଦାସଙ୍କର ଜନନୀ ମଧ୍ୟ ସମବେଦନାର ବଶବର୍ତ୍ତୀ ହୋଇ ଅନ୍ନଜଳ ଗ୍ରହଣ କରି ନାହାନ୍ତି। ଗୁରୁଦାସ ଏହିକଥା ଶୁଣିବାମାତ୍ରକେ ମାତାଙ୍କ ଆଦେଶକୁ ପ୍ରତୀକ୍ଷା ନ କରି ବେଶଭୂଷା ଶୀଘ୍ର ପରିତ୍ୟାଗ କରି ଶୁଦ୍ଧ ବସ୍ତ୍ର ପରିଧାନ ପୂର୍ବକ ପ୍ରତିବାସୀ ଗୃହକୁ ଠାକୁର ପୂଜା କରିବା ପାଇଁ ଧାଇଁ ଗଲେ ! ଅଜ ତଥାକଥିତ ସଭ୍ୟ ଜଗତରେ ଏବଡ଼ ଅଦ୍ଭୁତ କଥା ! ମାସିକ ଚାରି ସହସ୍ର ମୁଦ୍ରାଭୋଗୀ ଏତାଦୃଶ ଉଚ୍ଚ ପଦସ୍ଥ ବ୍ୟକ୍ତି ଦରିଦ୍ର ପ୍ରତିବାସୀ ଗୃହକୁ ଠାକୁର ପୂଜା କରିଯିବେ। କିନ୍ତୁ ଗୁରୁଦାସ ବିମଳ ପ୍ରାଚ୍ୟ ଓ ପ୍ରତୀଚ୍ୟ ସଭ୍ୟତାର ପ୍ରୟାଗରେ ଅବଗାହନ କରିଥିଲେ। ସୁତରାଂ ଏତେ ବଡ଼ ଜ୍ଞାନୀ ହୋଇ ଥରେ ଅହଙ୍କାର କରି ନାହାନ୍ତି, ଏତେ ବଡ଼ ଧନୀ ହୋଇ ଥରେ ଧନମଦରେ ମତ୍ତ ହୋଇ ନାହାନ୍ତି। ଲକ୍ଷ୍ମୀସରସ୍ୱତୀଙ୍କର ବରପୁତ୍ର ହୋଇ ମାତୃଭକ୍ତିର ପରାକାଷ୍ଠା ପ୍ରଦର୍ଶନ କରି ଯାଇଅଛନ୍ତି।

ଆମ୍ଭେମାନେ ବର୍ତ୍ତମାନ ରାୟ ବାହାଦୁର ରାଓ ମଧୁସୂଦନଙ୍କ ମାତୃଭକ୍ତି କଥା କହିବୁଁ। ମଧୁସୂଦନ ବାଲ୍ୟକାଳରୁ ଜନନୀଙ୍କୁ ହରାଇ ଥିଲେ। ମାତୃକୋଳ ସନ୍ତାନ ପକ୍ଷରେ କିପରି ନିରାପଦ ପ୍ରେମପୂର୍ଣ୍ଣ ସ୍ଥାନ ମଧୁସୂଦନ ତାହା ସୁନ୍ଦର ଭାବରେ ବ୍ୟକ୍ତ କରିଅଛନ୍ତି :—

"ମାତାର ଅମୃତ ବକ୍ଷ ସ୍ୱର୍ଗସୁଖ ଜଣି ହେ,
ଅତି ସୁଖମୟ;

କାହିଁ ପଞ୍ଚାନ୍ତର ତାର
ରାଜ୍ୟ ବିଭବ କି ଛାର
କାହିଁ ଆଉ ସନ୍ତାନର
ସେପରି ଆଶ୍ରୟ ହେ,
ସେପରି ଆଶ୍ରୟ ।

କି ସୁନ୍ଦର ଅଭିବ୍ୟକ୍ତି ! "କାହିଁ ଆଉ ସନ୍ତାନର ସେପରି ଆଶ୍ରୟ ହେ !" କେଡ଼େ ମଧୁମୟ କଥା ! କେଡ଼େ ସତ୍ୟ କଥା ! କେତେ ଅନୁଭବର କଥା ! ଆହା ! ବାସ୍ତବିକ କଥା ତ ! ଏ ସ୍ୱାର୍ଥପୂର୍ଣ୍ଣ ପୃଥିବୀରେ ମାତୃକୋଳ ବ୍ୟତୀତ ଏପରି ନିଃସ୍ୱାର୍ଥ ସ୍ନେହପୂର୍ଣ୍ଣ ସ୍ଥାନ ସନ୍ତାନର ଆଉ ଅଛି କି ? ଏପରି ଆଶ୍ରୟ ଆଉ ଅଛି କି ? ନାନା ରୋଗଶୋକସନ୍ତପ୍ତ ମାନବ ମାତୃମୁଖକୁ ଥରେ ଅନାଇ ଦେଲେ ଯେପରି ଆଶ୍ୱସ୍ତ ହୁଏ, ଅନ୍ୟତ୍ର ତାହା ସମ୍ଭବ କି ? ଜନନୀଙ୍କ ପ୍ରତି ଅଚଳ ଅଟଳ ଭକ୍ତି ଶ୍ରଦ୍ଧା ଥିଲା ବୋଲି ମଧୁସୂଦନ ବାଲ୍ୟକାଳରୁ ଜନନୀଙ୍କ ବିରହରେ ବ୍ୟଥିତ ହେବାବେଳେ କିଏ ଯେପରି ତାହାଙ୍କୁ କହିଦେଲା – "ଯେ ତୋତେ ଏପରି ସ୍ନେହମୟୀ ଜନନୀଙ୍କୁ ଦେଇଥିଲେ, ସେ ନିଶ୍ଚୟ ଜନନୀଙ୍କଠାରୁ ଅଧିକ ସ୍ନେହମୟୀ । ସେ ଆପଣାର ସ୍ନେହର ନମୁନା ସିନା ତୋ ଜନନୀ ମଧ୍ୟଦେଇ ପଠାଇ ଦେଇଥିଲେ । ଯଦି ତୁ ଜନନୀ ସ୍ନେହରେ ମୁଗ୍ଧ ହୋଇଥାଉ, ତେବେ ସେହି ଜଗଜ୍ଜନନୀଙ୍କ ସ୍ନେହ ଥରେ ଆସ୍ୱାଦନ କଲେ ତୋର ଶୂନ୍ୟ ପ୍ରାଣ ପୂର୍ଣ୍ଣ ହୋଇଯିବ । ତୁ ତାଙ୍କର ପ୍ରେମରେ ବିଭୋର ହୋଇଯିବୁ । ସେତେବେଳେ କେବଳ ଏକ ସ୍ଥଳରେ ମାତୃମୂର୍ତ୍ତି ନ ଦେଖି ନିଖିଳ ଜଗତରେ ଜଗନ୍ମାତାଙ୍କୁ ଦର୍ଶନ କରି ପାରିବୁ ।" ମଧୁସୂଦନ ଏହିପରି ପ୍ରେରଣାର ବଶବର୍ତ୍ତୀ ହୋଇ ସିନା ଜଗନ୍ମାତାଙ୍କ ଧ୍ୟାନରେ ମଗ୍ନ ହେଲେ । ତାହାଙ୍କର ସେହି ଭାବ ସେ "ମୋ ଜନନୀ"ରେ କି ମଧୁର ଭାବରେ ବ୍ୟକ୍ତ କରିଅଛନ୍ତି :—

"ପାଞ୍ଚ ବର୍ଷ ହେନୁଁ ମୁହିଁ
ଅଟଇ ଅନାଥ ହେ,
ହରାଇ ଜନନୀ;

କିନ୍ତୁ ଅହା ବିଶ୍ୱପତି ଦୟା ବହି ଦୁଃଖୀ ପ୍ରତି
ଦେଇଛନ୍ତି ମୋର ପ୍ରାଣେ ମହା ସ୍ପର୍ଶମଣି ହେ,
ମହା ସ୍ପର୍ଶମଣି ।
ବିଶ୍ୱାସ ପରଶମଣି ହୃଦୟେ ମୁଁ ଧରି ହେ
ଦେଖଇ ପ୍ରତ୍ୟକ୍ଷେ,
ହବା ଜଣି ଆକାଶରେ ଜଳେ ସ୍ଥଳେ ଜଗତରେ
ମୋହର ଜନନୀମୂର୍ତ୍ତି ଧରି ମୋତେ ବକ୍ଷେ ହେ,
ଧରି ମୋତେ ବକ୍ଷେ ।"

ଭକ୍ତବର ମଧୁସୂଦନଙ୍କର ମଧୁମୟ ମାତୃଭକ୍ତି ଯଥାର୍ଥ ଅନୁଧ୍ୟାନ ଏବଂ ଅନୁକରଣର ସାମଗ୍ରୀ । ଯେ ପ୍ରକୃତରେ ଜନନୀଗତ ପ୍ରାଣ, ବିଶ୍ୱଜନନୀ ତାହାଙ୍କୁ ଅପଣା ନିକଟରୁ ଠାଣି ନିଅନ୍ତି ଏବଂ ଅପଣାର ସଚ୍ଚିଦାନନ୍ଦମୟ କୋଳରେ ଆଶ୍ରୟ ଦିଅନ୍ତି ।

ଅମ୍ଭେମାନେ ଆଉ ଗୋଟିଏ ସୁପୁତ୍ରଙ୍କ କଥା କହି "ମଧୁରେଣ ସମାପୟେତ୍" କରିବୁଁ । ଶଚୀସୁତ ଶ୍ରୀଗୌରାଙ୍ଗ ସନ୍ନ୍ୟାସ ଅବଲମ୍ବନ କଲେ । ସନ୍ନ୍ୟାସୀ ହେଲେ ପୁତ୍ର ପିତାମାତାଙ୍କ ପ୍ରତି ଉଦାସୀ ହୋଇଥାନ୍ତି । ଥରେ ମାତୃମୁଖ ଦେଖିଲେ ସନ୍ନ୍ୟାସର ଅବମାନନା ହେବ ବୋଲି ମନେ କରନ୍ତି । କିନ୍ତୁ ଶ୍ରୀ ଶଚୀଦୁଲାଳ ଗୌରଚନ୍ଦ୍ର "ସ୍ନେହବହିତାୟ" ତ୍ୟାଗ-ଧର୍ମ ଅବଲମ୍ବନ କରି ସୁଦ୍ଧା ନୀରସ ଜୀବନ ବହନ କରି ମାତୃପ୍ରାଣରେ ଶେଲବିଦ୍ଧ କରି ନାହାନ୍ତି । ବରଂ ମାତାଙ୍କୁ ପ୍ରବୋଧ ଦେଇ କହି ଅଛନ୍ତି:—

"ଜାନ ବା ନା ଜାନ ଯଦି କରିଲ ସନ୍ନ୍ୟାସ ।
ତଥାପି ତୋମାରେ କଭୁ ନହିବ ଉଦାସ ॥"

ପୁଣି ଭକ୍ତମାନଙ୍କୁ ସମ୍ବୋଧନ କରି କହୁଅଛନ୍ତି :—

"ତୋମା ସବେ ନାଡ଼ି ଛିବ ଯାବତ୍ ଅମି ଜୀବ ।
ମାତାରେ ତାବତ୍ ଅମି ଛାଡ଼ିତେ ନାରିବ ।"

ଅର୍ଥାତ୍ ମୁଁ ଜାଣି ବା ନ ଜାଣି ସନ୍ନ୍ୟାସ ଅବଲମ୍ବନ କରିଅଛୁ ସତ୍ୟ, କିନ୍ତୁ ମାତାଙ୍କ ପ୍ରତି କେବେହେଁ ଉଦାସୀନ ହେବ ନାହିଁ ଏବଂ ଯେତେ ଦିନ ଜୀବିତଥିବ, ତାହାଙ୍କୁ ଛାଡ଼ି ପାରିବ ନାହିଁ । ଶ୍ରୀଗୌରାଙ୍ଗ ସନ୍ନ୍ୟାସୀ ହୋଇ ଯେପରି ମାତୃପ୍ରୀତି ଦେଖାଇ ଯାଇଅଛନ୍ତି, ତାହା ଚିରମାତୃପାଳିତ ସଂସାରୀଠାରେ ଦେଖାଯାଏ କି ?

# ନବମ ଅଧ୍ୟାୟ

## କୁପୁତ୍ର

"He who displeases and annoys his parents, is not a worthy son, but worthless as a piece of stone."—Samal (A Gujrati poet)

ଯେଉଁ ବ୍ୟକ୍ତି ଆପଣାର ପିତାମାତାଙ୍କର ଇଚ୍ଛାନୁରୂପ କାର୍ଯ୍ୟ ନ କରି ସ୍ୱେଚ୍ଛାଗ୍ରସ୍ତ ହୋଇ ଭବଧାମରେ ବିଚରଣ କରେ, ଯାହାଦ୍ୱାରା ମାନବ ସମାଜର ଅକଲ୍ୟାଣ ସାଧିତ ହୁଏ ଏବଂ ଯାହାର ଆଚରଣରେ ପିତାମାତା ଗୌରବାନୁଭବ କରିବା ଦୂରେଥିଉ ଲୋକସମାଜରେ ଅଧୋମୁଖ ହୁଅନ୍ତି, ସେ କୁପୁତ୍ର ।

ଏହି ପୃଥିବୀ ଭଲ ମନ୍ଦର ସମ୍ମିଶ୍ରଣରେ ନିର୍ମିତ; କିନ୍ତୁ ମାୟାମୟ ସଂସାରରେ ଭଲଠାରୁ ମନ୍ଦର ଅଂଶଟା ସବୁବେଳେ ସର୍ବଦା ଅଧିକ । ସୁତରାଂ କୁପୁତ୍ର ଯେ ପ୍ରାୟ ଘରେ ଘରେ ବିଦ୍ୟମାନ, ସେ କଥା କହିଲେ ଅତ୍ୟୁକ୍ତି ହେବ ନାହିଁ । ଆମ୍ଭେମାନେ ଇତିପୂର୍ବେ ଏହି ବିଷୟ କିଛି ପରିମାଣରେ ଆଲୋଚନା କରିଅଛୁଁ ।

ମାତାର କୁପୁତ୍ର କିଏ ?

ଉକ୍ତ ପ୍ରଶ୍ନକୁ ଟିକିଏ ବିଶଦ ଭାବରେ ଆଲୋଚନା କଲେ ଦେଖି ପାରୁଁ ଯେ ଯେଉଁ ବ୍ୟକ୍ତି ଆପଣାର କୌଣସି କର୍ମଦ୍ୱାରା ବର୍ତ୍ତମାନ ଏବଂ ଭବିଷ୍ୟତରେ ମାତାଙ୍କର କଷ୍ଟର କାରଣ ବା ବିରକ୍ତିଭାଜନ ହୁଏ ତାହାକୁ କୁପୁତ୍ର ବୋଲାଯିବ । ବର୍ତ୍ତମାନ ଏବଂ ଭବିଷ୍ୟତକୁ ଏକତ୍ର ମିଶାଇବାର କାରଣ ଅଛି । କୌଣସେ କୌଣସି ସ୍ଥଳରେ ପୁତ୍ରର କୌଣସି କାର୍ଯ୍ୟରେ ମାତା ବର୍ତ୍ତମାନ ବିରକ୍ତ ହେଲେହେଁ ଭବିଷ୍ୟତରେ ଆନନ୍ଦ ଲାଭ କରି ଥାଆନ୍ତି । ଓଡ଼ିଶାରେ ଏ ଦୃଷ୍ଟାନ୍ତ ବିରଳ ନୁହେଁ । ଅମ୍ଭେମାନେ ଇତି-ପୂର୍ବେ କହିଅଛୁଁ, ମଫସଲମାନଙ୍କରେ ଜନନୀଙ୍କର ଇଚ୍ଛା ଯେ ପୁତ୍ର ତାଙ୍କର

ଚକ୍ଷୁରୁ ଅନ୍ତର ନ ହେଉ; ପାଠପଢ଼ା ନ ହେଉ ପଛକେ, ପୁଅ ପାଖରେ ଥାଉ, ହାଡ଼ ମାଂସ ହାଡ଼ରେ ଦେଇ ଦୁଃଖେ କଷ୍ଟେ କାଳ କଟାଉ ।

ଆଜ ଓଡ଼ିଶାରେ ଯେତେ ଶିକ୍ଷିତ ବ୍ୟକ୍ତି ଅଛନ୍ତି ପ୍ରାୟ ସମସ୍ତଙ୍କୁ ସହରକୁ ପଢ଼ି ଆସିବାବେଳେ ମାତୃପ୍ରାଣରେ ଆଘାତ ଦେବାକୁ ପଡ଼ିଅଛି । କିନ୍ତୁ ଆଜ ସେମାନଙ୍କର ଜନନୀମାନେ ମହାସୁଖରେ କାଳଯାପନ କରୁଅଛନ୍ତି । ପୁତ୍ରମାନେ ସେତେବେଳେ ସେମାନଙ୍କୁ ଯେଉଁ ଦୁଃଖ ଦେଇଥିଲେ ତାହା ଭବିଷ୍ୟତ୍ ସୁଖ ନିମିତ୍ତ ଜାଣି ପାରି ଜନନୀମାନେ ପୁତ୍ରମାନଙ୍କ ପ୍ରତି କୌଣସି ପ୍ରକାର ବିରକ୍ତିଭାବ ପୋଷଣ କରିବା ତେଣିକି ଥାଉ ସେମାନଙ୍କର ଅଧ୍ୟବସାୟ, ଶ୍ରମ, କ୍ଳେଶ ସ୍ୱୀକାର ଏବଂ ବୁଦ୍ଧିମତ୍ତାର ପ୍ରଶଂସା କରୁଅଛନ୍ତି ।

ସ୍ତ୍ରୀଶିକ୍ଷା ସଙ୍ଗେ ସଙ୍ଗେ ଉତ୍କଳ ଯୁବକ ସମ୍ମୁଖରୁ ଏ ପ୍ରତିବନ୍ଧକ ଉଠିଯିବ । କୌଣସି କାଳେ କୌଣସି ମାତା ପୁତ୍ରର ଅମଙ୍ଗଳ କାମନା କରନ୍ତି ନାହିଁ । କେବଳ କେଉଁଠା ପୁତ୍ର ପକ୍ଷରେ ମଙ୍ଗଳ ଓ କେଉଁଠା ଅମଙ୍ଗଳ ଜାଣି ନ ପାରି ସେ ଅଜ୍ଞତା ଦୋଷରୁ ସମୟ ସମୟରେ ଏପରି ଇଚ୍ଛା ପ୍ରକାଶ କରି ବସନ୍ତି ଯଦ୍ଦ୍ୱାରା ସନ୍ତାନର ମଙ୍ଗଳ ପରିବର୍ତ୍ତରେ ଅମଙ୍ଗଳର ଅଧିକ ଆଶଙ୍କା । ଏହି ଅଜ୍ଞତା ଶିକ୍ଷା ଦ୍ୱାରା ଅପନୋଦିତ ହୋଇଯିବ । ଏପରି ଅଜ୍ଞତା ଜନନୀମାନଙ୍କର ଗୋଟିଏ କଳଙ୍କ ସନ୍ଦେହ ନାହିଁ; ଏବଂ କଳଙ୍କ ଦୂର କରିବାର ଭାର ଶିକ୍ଷିତ ଜନସାଧାରଣଙ୍କ ଉପରେ ନ୍ୟସ୍ତ । ଯାହାହେଉ, ପୁତ୍ର ଭାବିକଲ୍ୟାଣକର କୌଣସି କାର୍ଯ୍ୟ ମାତାଙ୍କ ଇଚ୍ଛାର ବିରୋଧରେ ଅନୁଷ୍ଠାନ କଲେ ଧୀରନମ୍ରଭାବରେ ଆପଣାର ଫଳାଫଳ ତାହାଙ୍କୁ ଜଣାଇ ଦେଇ ତାହାଙ୍କର ସାନନ୍ଦ ଅନୁମତି ଗ୍ରହଣ କରିବେ । ମାତାଙ୍କ ପ୍ରାଣରେ ଦୁଃଖ ଦେଇ ଯେ କୌଣସି କାର୍ଯ୍ୟ କଲେ ନିଜ ପ୍ରାଣରେ ଅଶାନ୍ତି ଅନୁଭୂତ ହୁଏ; ସୁତରାଂ ସେ କାର୍ଯ୍ୟ କେବେହେଁ ସୁସମ୍ପନ୍ନ ହୁଏ ନାହିଁ । କୁପୁତ୍ରମାନେ ଏତକ ଭାବନ୍ତି ନାହିଁ ।

କେହି କେହି ଦୁଇ ଗୃର ଅକ୍ଷର ଶ୍ରଜଭାଷା ପାଠ କରି ଆପଣାର ଜନନୀଙ୍କୁ ଏକାବେଳକେ ଭୁଚ୍ଛ ମନେ କରନ୍ତି । ଏ ଦୃଶ୍ୟ ଗ୍ରାମେ ଗ୍ରାମେ ପୂର୍ଣ୍ଣ । ମାତାଙ୍କର ସମସ୍ତ ଅଭଜ୍ଞତା ଏବଂ ନିଃସ୍ୱାର୍ଥ ପ୍ରୀତିପୂର୍ଣ୍ଣ ବ୍ୟବହାର ସମ୍ମୁଖରେ ପୁତ୍ରର ଅଗାଧ ବିଦ୍ୟା ମଧ୍ୟ ଅକିଞ୍ଚିତ୍କର । ଯେଉଁମାନେ ଏ ସମସ୍ତ ଅନୁଭବ କରନ୍ତି ନାହିଁ, ବାଲ୍ୟକାଳରୁ ସେମାନଙ୍କ ମାତାଙ୍କ ପ୍ରତି ଅବାଧ୍ୟ ହେବା ଦେଖାଯାଏ ।

ପୁଣି ସ୍ତ୍ରୀମୁଖ ଦର୍ଶନ ଅନ୍ୟ ଗୋଟିଏ ଘାଟି । ଅନେକେ ପ୍ରିୟତମାଙ୍କ ମୁଖ ଦର୍ଶନ କରି ମାତାଙ୍କ ପ୍ରତି ଅପ୍ରିୟାଚରଣ କରନ୍ତି ଏବଂ କେହି କେହି ପୁଣି ମାତୃସଙ୍ଗ ତ୍ୟାଗକରି ପୃଥକ୍ ଭାବରେ ବାସ କରନ୍ତି ! ଧନ୍ୟ ମାତା ବସୁନ୍ଧରା ! ଏ ମର୍ତ୍ତ୍ୟରେ ନାହିଁ କଅଣ ? ସ୍ତ୍ରୀ ବୁଦ୍ଧିରେ ପଡ଼ି କେହି କେହି ମାତାଙ୍କ ପ୍ରତି ଏପରି ବ୍ୟବହାର କରନ୍ତି ଯାହା ବର୍ଣ୍ଣନ କଲେ ଲେଖନୀ ଦୂଷିତ ହେବାର ଭୟ ହୁଏ । କୃତଘ୍ନତା କୁପୁତ୍ରର ପ୍ରଧାନ ଲକ୍ଷଣ । ଅମ୍ଭେମାନେ କୁପୁତ୍ରର ବହୁଳ ଦୃଷ୍ଟାନ୍ତ ଦେଇ କାହାର ମନ କଳଙ୍କିତ କରିବାର ପକ୍ଷପାତୀ ନୋହୁଁ; କେବଳ ଜଣେ ଦୁଇଜଣଙ୍କର କଥା କହି ନିରସ୍ତ ହେବୁଁ ।

ପ୍ରଥମରେ ପରଶୁରାମଙ୍କ କଥା କହିବୁଁ । ଅନେକେ ପରଶୁରାମଙ୍କୁ ମାତୃଦ୍ରୋହୀ ବୋଲି ବିବେଚନା କରନ୍ତି । ବର୍ତ୍ତମାନ ସମସ୍ତ ବିବରଣ ଶୁଣି ପାଠକମାନେ ବିଚାର କରିବେ ସେ ପ୍ରକୃତରେ ମାତୃଦ୍ରୋହୀ କି ନା ?

ଦିନେ ପରଶୁରାମଙ୍କ ମାତୃଦେବୀ ରେଣୁକା ସ୍ନାନାର୍ଥ ନଦୀକୁ ଯାଇଥିଲେ । ସେଠାରେ ରାଜା ଚିତ୍ରରଥଙ୍କ ମହିଷୀ ସମଭିବ୍ୟାହାରରେ ଜଳକେଳି କରିବା ଦେଖି ରେଣୁକା କାମଦଗ୍ଧ ହୋଇ ଆଶ୍ରମକୁ ପ୍ରତ୍ୟାବର୍ତ୍ତନ କଲେ । ଜମଦଗ୍ନିଙ୍କର ଆଶ୍ରମ ତପୋବନ । ସେଠାରେ ସମସ୍ତଙ୍କ ଦେହରୁ ପବିତ୍ର ତେଜ ନିର୍ଗତ ହେଉଥାଏ । ରେଣୁକା କାମଦଗ୍ଧ ହେବାମାତ୍ରକେ ନିଷ୍ପ୍ରଭ ହୋଇଗଲେ । ତାହାଙ୍କର କାନ୍ତିଶୂନ୍ୟ

ମୁଖ ଦର୍ଶନ କଲେଷର୍ମି ସମସ୍ତ ଘଟନା ଜମଦଗ୍ନିଙ୍କର ନିର୍ମଳ ଦର୍ପଣବତ୍ ମନ ଉପରେ ପ୍ରତିଫଳିତ ହେଲା । ସେ ଆପଣାର ବ୍ୟଭିଚାରିଣୀ ସ୍ତ୍ରୀର ମୁଖଦର୍ଶନ କରିବେ ନାହିଁ ବୋଲି ରୁମଣ୍ୱାନ୍, ସୁଷେଣ, ବସୁ ଏବଂ ବିଶ୍ୱାବସୁ ନାମକ ଚାରି ଅଗ୍ରଜ-ପୁତ୍ରଙ୍କୁ ଜନନୀଙ୍କୁ ହତ୍ୟା କରିବା ପାଇଁ ଆଦେଶ କଲେ । ସେମାନେ ଜନନୀହତ୍ୟାକାର୍ଯ୍ୟରେ ଲିପ୍ତ ନ ହୋଇ ପିତାଙ୍କର ଅବାଧ ହେବାରୁ ପିତୃ ଅଭିଶାପରେ ଜଡ଼ବତ୍ ହୋଇଗଲେ । କନିଷ୍ଠ ପୁତ୍ର ପର୍ଶୁରାମ ସେତେବେଳେ କୌଣସି କାର୍ଯ୍ୟରେ ସ୍ଥାନାନ୍ତରକୁ ଯାଇଥିଲେ । ସେ ଫେରିଆସି ସମସ୍ତ ଦୃଶ୍ୟ ଦେଖି ଅବାକ୍ ହୋଇଗଲେ । ବର୍ତ୍ତମାନ ତାଙ୍କର ପାଳି ପଡ଼ିଲା । ପିତା ତାହାଙ୍କୁ ମାତୃହତ୍ୟା କରିବା-ପାଇଁ ଆଦେଶ ଦେବାରୁ ସେ ତତ୍କ୍ଷଣାତ୍ ତାହା ପାଳନ କଲେ । ପରଶେଷରେ ପିତୃଦେବ ସନ୍ତୁଷ୍ଟ ହୋଇ ବର ଦେବେ ବୋଲି ପ୍ରତିଜ୍ଞା କଲେ । ପର୍ଶୁରାମ କହିଲେ, "ପିତଃ, ଏହି ବର ଦିଅନ୍ତୁ ଯେ, ମୋର ଜନନୀ ପୁନର୍ଜୀବିତା ହେବେ । ମୁଁ ଯେ ତାହାଙ୍କୁ ହତ୍ୟା କରିଥିଲି, ଏହା ତାହାଙ୍କ ସ୍ମୃତିପଥରୁ ଏକାବେଳକେ ଅନ୍ତର୍ହିତ ହେବ । ମୋତେ ଯେପରି ମାତୃହତ୍ୟା ପାପ ସ୍ପର୍ଶ କରିବ ନାହିଁ ଏବଂ ଜଡ଼ତାପ୍ରାପ୍ତ ମୋର ଭ୍ରାତାମାନଙ୍କର ଚୈତନ୍ୟୋଦୟ ହେବ ।"

ପିତା ଜମଦଗ୍ନି "ତଥାସ୍ତୁ" କହିବାମାତ୍ରକେ ପରଶୁରାମ ତତ୍କ୍ଷଣାତ୍ ପ୍ରାର୍ଥିତ ବରମାନ ଲାଭ କଲେ । ଏଥିରୁ ପର୍ଶୁରାମଙ୍କୁ ମାତୃଦ୍ରୋହୀ କହିବା କେତେଦୂର ସଙ୍ଗତ ତାହା ସୁଧୀମାନଙ୍କର ବିଚାର୍ଯ୍ୟ ।

ଯୀଶୁଖ୍ରୀଷ୍ଟଙ୍କର ଜନ୍ମ ହେବାର ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବରୁ ପୃଥିବୀର ଇତିହାସ ବିଶେଷତଃ ରୋମର ଇତିହାସ ଜନୈକ କୁପୁତ୍ର ଦ୍ୱାରା କଳଙ୍କିତ ହୋଇଅଛି । ରୋମ ରାଜ୍ୟର ଅଧିପତି ନୀରୋ ( Nero ) ସପ୍ତଦଶବର୍ଷ ବୟସରେ ସିଂହାସନ ଅଧିରୋହଣ କଲେ । ସେନେକା (Seneca) ପ୍ରମୁଖ ଶିକ୍ଷକମାନଙ୍କ ଦ୍ୱାରା ଶିକ୍ଷିତ ନୀରୋ ଜଣେ ବିଚକ୍ଷଣ

ରାଜା ହେବେ ବୋଲି ସମସ୍ତେ ଆଶା ପୋଷଣ କରିଲେ । କିନ୍ତୁ କାଳକ୍ରମେ ସମସ୍ତଙ୍କୁ ନିରାଶ ହେବାକୁ ପଡ଼ିଲା । ଶିକ୍ଷକମାନେ ତାହାଙ୍କର ଚରିତ୍ରଗଠନ ଆଡ଼କୁ ଲକ୍ଷ୍ୟ ନ ରଖି କେବଳ ତାହାଙ୍କ ବୁଦ୍ଧିବୃତ୍ତିର ଉନ୍ନତି ଆଡ଼କୁ ଲକ୍ଷ୍ୟ ରଖିଥିବାରୁ ବିଷମୟ ଫଳ ଅଚିରେ ଫଳିଲା । ନୀରୋଙ୍କୁ ଅବାଧ ଦେଖି ତାହାଙ୍କର ଜନନୀ ବ୍ରିଟାନିକସ୍‌ନାମକ ଜନୈକ ଅର୍ଦ୍ଧତରୁଣ ଯୁବକକୁ ରୋମ ସିଂହାସନରେ ବସାଇବେ ବୋଲି ପୁତ୍ରକୁ ଭୟ ପ୍ରଦର୍ଶନ କଲେ । ପୁତ୍ର ସଶୋଧିତ ହେବା ତେଣିକି ଥାଉ, ନିର୍ଦ୍ଦୋଷ ବ୍ରିଟାନିକସ୍‌ଙ୍କୁ ଜୀବନମାର୍ଗର ପ୍ରଥମ କଣ୍ଟକ ମନେ କରି ତାହାଙ୍କୁ ହତ୍ୟା କଲେ । ନୀରୋ ପୁଣି ମାତାଙ୍କୁ ଜୀବନପଥର ଅନ୍ୟ କଣ୍ଟକ ମନେ କରି ମାତୃହତ୍ୟାପାପରେ ଲିପ୍ତ ହେବାର ସୁଯୋଗ ଅନ୍ୱେଷଣ କରୁଥାନ୍ତି । ଯେବେ ତାହାଙ୍କର ମାତା ଯେଉଁ ଜାହାଜରେ ସ୍ଥାନାନ୍ତରକୁ ଯାଉଥିଲେ ସେ ତାହାଙ୍କୁ ବୁଡ଼ାଇଦେବାର ଚେଷ୍ଟା କରି ବିଫଳମନୋରଥ ହେଲେ । ପରେ ଜନୈକ ଆତତାୟୀ ଦ୍ୱାରା ମାତୃପ୍ରାଣ ହରଣ କରି ନିର୍ଦ୍ଦୟ ଏହି ମାନବ-କୁଳ-କଳଙ୍କ ନରରକ୍ତପିପାସୁ ନୃପତି ସନ୍ତୁଷ୍ଟ ହେଲେ । ସେ କେବଳ ମାତୃହତ୍ୟା କରି ନିବୃତ୍ତ ହେଲେ ନାହିଁ । ମାତୃହତ୍ୟାପାପ ତାହାଙ୍କୁ ସ୍ତ୍ରୀହତ୍ୟା, ଗୁରୁହତ୍ୟା ଏବଂ ଅନ୍ୟାନ୍ୟ ନରହତ୍ୟାପାପରେ ମଧ୍ୟ ଲିପ୍ତ କଲା । ବୋଧ ହୁଏ ନରପତି ଆଖ୍ୟା ଧାରଣ କରି ପୃଥିବୀରେ ଦ୍ୱିତୀୟ ବ୍ୟକ୍ତି ଏପରି ନୃଶଂସ ଆଚରଣ ଦେଖାଇ ମନୁଷ୍ୟସମାଜରେ ଘୃଣ୍ୟ ହୋଇ ନାହାନ୍ତି ।

# ଦଶମ ଅଧ୍ୟାୟ

## ମାତୃଭକ୍ତିର ପୁରସ୍କାର ।

**A child may have too much of its mother's blessing"**

ପରିଶେଷରେ ମାତୃଭକ୍ତିର ଶୁଭ ପରିଣାମ ଅମ୍ଭମାନଙ୍କର ଆଲୋଚ୍ୟ । ଅମ୍ଭେମାନେ ଯେଉଁ ସବୁ ମାତୃଭକ୍ତ ମହାତ୍ମାମାନଙ୍କର ଗୁଣ କୀର୍ତ୍ତନ କରିଅଛୁଁ, ମାତୃଭକ୍ତିର ପରିଣାମ ସେମାନଙ୍କ ଜୀବନରେ ମୂର୍ତ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ, ତେବେ ବିଶଦଭାବରେ ସେ ବିଷୟରେ କିଛି କହିବାକୁ ହେବ ।

ଅମ୍ଭେମାନେ ସାଧାରଣ ଜୀବନରେ ଦେଖୁଁ, ଯେଉଁ ଗୃହରେ ମାତା କେନ୍ଦ୍ରସ୍ୱରୂପା, ସେହିଠାରେ ଶାନ୍ତି ଚିରବିଦ୍ୟମାନ । ପୁତ୍ର, କନ୍ୟା ପୁତ୍ରବଧୂ, ପୌତ୍ର ଇତ୍ୟାଦି ସମସ୍ତେ ସେହି ଗୃହଲକ୍ଷ୍ମୀଙ୍କର ଅନୁଗତ ଥିଲେ ଘର ଯେପରି ସୁନ୍ଦର ଦେଖାଯାଏ, ଅନ୍ୟ ଭାବରେ ସେପରି ସୁନ୍ଦର ହୁଏ ନାହିଁ । କାରଣ ଗୃହକର୍ତ୍ତ୍ରୀଙ୍କଦ୍ୱାରା ସମସ୍ତଙ୍କର ଶୃଙ୍ଖଳିତ ହେବା ସ୍ୱାଭାବିକ, ତାଙ୍କ ଉପରେ କର୍ତ୍ତୃତ୍ୱ ନ ରହି ଯଦି ତାଙ୍କର କନିଷ୍ଠ କାହାରି ଉପରେ କର୍ତ୍ତୃତ୍ୱ ନ୍ୟସ୍ତ ହୁଏ, ସେଠାରେ ଅସ୍ୱାଭାବିକତା ହେତୁ ଧନଜନ-ବେଷ୍ଟିତ ହୋଇ ମଧ୍ୟ ସମସ୍ତେ ଅଶାନ୍ତିରେ କାଳକ୍ଷେପ କରନ୍ତି । ଶାସନକାର୍ଯ୍ୟରେ ଯଦି କର୍ତ୍ତାମାନେ ଉପରସ୍ଥ କର୍ମଚାରୀ ଉପରେ ଦାୟିତ୍ୱ ନ ଦେଇ ତାଙ୍କର ଅଧସ୍ତନ କର୍ମଚାରୀ ଉପରେ ବିଶ୍ୱାସ ସ୍ଥାପନ କରି ତାଙ୍କର ସ୍କନ୍ଧରେ ସମସ୍ତ ଦାୟିତ୍ୱ ଅର୍ପଣ କରନ୍ତି, ତେବେ ସେଠାରେ ଯେପରି ଶାସନ-ଶୃଙ୍ଖଳା ସମ୍ଭବ, ପୁତ୍ର ନିଜ ମାତାଙ୍କ ଉପରେ ସମସ୍ତ ଭାର ନ ଦେଇ ମାୟାରେ ପଡ଼ି ଯେବେ ପ୍ରେୟସୀତମା ସ୍ତ୍ରୀଙ୍କ ହସ୍ତରେ ସମସ୍ତ ଭାର ଦିଅନ୍ତି, ତେବେ ପରିବାର ଭିତରେ ମଧ୍ୟ ସେହିପରି ଶୃଙ୍ଖଳାର ଆଶଙ୍କା କରାଯାଏ । ଲୋକେ ଭାବନ୍ତି ନାହିଁ ଯେ, ଉପଯୁକ୍ତ ଲୋକ ଉପରେ ଉପଯୁକ୍ତ ଭାର ନ ଦେଲେ ପୂଜ୍ୟପୂଜା-ବ୍ୟତିକ୍ରମ-ଦୋଷ ଘଟେ ଏବଂ

ବିଶ୍ୱାସର ପାଦ ଉପରେ ବିଶ୍ୱାସ ନ ଥିଲେ ପଦେ ପଦେ ବିପଦର ଆଶଙ୍କା ଥାଏ ।

ଆମ୍ଭେମାନେ ପ୍ରଥମରେ କହିଅଛୁଁ, ଯେଉଁଠାରେ ମାତା କେନ୍ଦ୍ରସ୍ୱରୂପା, ସେଠାରେ ଭ୍ରାତୃବିବାଦ ନାହିଁ—ସମସ୍ତେ ମାତୃସ୍ନେହସୂତ୍ରରେ ଗ୍ରନ୍ଥିତ ହୋଇ ଆନନ୍ଦରେ ଦିନ ଯାପନ କରନ୍ତି; କିନ୍ତୁ ଯେଉଁଠାରେ ମାତାଙ୍କର ବହୁ ପୁତ୍ର ମଧ୍ୟରୁ କୌଣସି ଗୋଟିଏ ପୁତ୍ର ମାତାଙ୍କ ପ୍ରତି ଅଶ୍ରଦ୍ଧାବାନ୍, ସେଠାରେ ଅଚିରେ ସମସ୍ତେ ବିଶୃଙ୍ଖଳ ହୋଇ ପଡ଼ିବେ । ଦୁର୍ଗାମୂର୍ତ୍ତି ଦର୍ଶନ କଲାବେଳେ ପ୍ରାଣରେ ଏତେ ଅପାର ଆନନ୍ଦ ଜାତ ହୁଏ; କାହିଁକି ? ମା ଦୁର୍ଗା କେନ୍ଦ୍ରସ୍ଥାନ ଅଧିକାର କରିଅଛନ୍ତି । ଦକ୍ଷିଣ ଓ ବାମଦେଶରେ ପୁତ୍ର କନ୍ୟାମାନେ ନିଜ ନିଜ ସ୍ଥାନରେ ନିର୍ଭୟରେ ଆପଣା ଆପଣା ବାହନୋପରି ଆସୀନ । ମା ଯେ ଦୁର୍ଦ୍ଦାନ୍ତ ମହିଷାସୁରକୁ ମର୍ଦ୍ଦନ କରୁଅଛନ୍ତି ! ସନ୍ତାନ ସନ୍ତତିମାନଙ୍କର ଅଭୟର କାରଣ କାହିଁ ? ସମସ୍ତେ ମା'ଙ୍କର ସହକାରୀ—ମା ସମସ୍ତଙ୍କୁ ବିପଦରୁ ରକ୍ଷା କରୁଅଛନ୍ତି । ଆହା ! ଯେଉଁଠାରେ ମା ଏପରି କେନ୍ଦ୍ରସ୍ଥାନ, ପ୍ରଧାନସ୍ଥାନ, ଶୀର୍ଷସ୍ଥାନ ଅଧିକାର କରନ୍ତି ନାହିଁ, ସେଠାରେ ପୁତ୍ର କନ୍ୟାମାନଙ୍କୁ ମାୟାସୁରକବଳରେ ପଡ଼ି ଛନ୍‌ଛନ୍ ହେବାକୁ ପଡ଼େ ସିନା ! ମା ନିଜ ଆସନରେ ଆସୀନ ଥିଲେ ଅତି ଦୁଃଖୀର କୁଟୀର ଯେପରି ହାସ୍ୟମୟ ଥାଏ, ମାଙ୍କୁ ନିଜ ସ୍ଥାନରେ ବସାଇ ନ ପାରିଲେ ବହୁ ବିଭବଶାଳୀର ସୁରମ୍ୟ ପ୍ରସାଦ ମଧ୍ୟ ଶୋକାକ୍ରାନ୍ତ ହୁଏ ।

ସନ୍ତାନର ମଙ୍ଗଳବିଧାନରେ ପିତା ମଧ୍ୟ ମାତାଙ୍କର ଅଧୀନତା ସ୍ୱୀକାର କରନ୍ତି । ଅନ୍ୟ କଥା ଦୂରେ ଥାଉ, ସାକ୍ଷାତ୍ ଶିବ ମା କାଳୀଙ୍କ ଚରଣତଳେ ଶାୟିତ । ଏହା ଦେଖି ମନେ ହୁଏ ଯେ, ଜୀବନକଲ୍ୟାଣସାଧନଲାଗି ଶିବ ପ୍ରଣୟିନୀଙ୍କର ଅଧୀନତା ସ୍ୱୀକାର କରିଅଛନ୍ତି । କଥାରେ ଅଛି "ମାନିଲେ ଠାକୁର, ନ ମାନିଲେ ପଥର ।" ବାସ୍ତବିକ ଯେଉଁପରିବାରରେ ମାତାଙ୍କର ପୂଜା ବିଦ୍ୟମାନ ସେଠାରେ ସେ ଶକ୍ତିମତୀ ଜନନୀରୂପେ

ସମସ୍ତଙ୍କର ମଙ୍ଗଳବିଧାନରେ ରତା; କିନ୍ତୁ ଯେଉଁ ପରିବାରରେ ସେ ପ୍ରକାର ଅଭାବ, ସେଠାରେ ସେ ପ୍ରସ୍ତରବତ୍ ନୀରବ ନିଶ୍ଚଳ ଥାଇ କାଳାତିପାତ କରନ୍ତି । ଅନେକ ସ୍ଥଳରେ ପୁତ୍ରବଧୂମାନେ ଏତିକି କଥା ବୁଝନ୍ତି ନାହିଁ ଯେ, ସେମାନେ ଶାଶୁଙ୍କୁ ସମ୍ମାନ ଦେଖାଇଥିଲେ ନିଜେ ଶାଶୁ ହେବାବେଳେ ସେହିପରି ସମ୍ମାନ ପାଇବେ । ଯେଉଁ ବୋହୂ ଶାଶୁପଣିଆ କରିବାକୁ ଯାଏ, ଯେଉଁ ଶିଷ୍ୟ ବା ଛାତ୍ର ଗୁରୁଗିରି କରିବାକୁ ଯାଏ ଏବଂ ଯେଉଁ ଅଧସ୍ତନ କର୍ମଚାରୀ ଉପରସ୍ଥ କର୍ମଚାରୀର ଆଚରଣ କରେ, ସେମାନେ ଲୋକଚକ୍ଷୁରେ ଅସ୍ୱାଭାବିକ – ସୁତରାଂ ଘୃଣ୍ୟ । ନିଜ ନିଜର ସମସ୍ତ ଅଧିକାରପର୍ଯ୍ୟନ୍ତ ସମସ୍ତଙ୍କୁ ଧୀରଭାବରେ ଅପେକ୍ଷାକରି ଅଭିଜ୍ଞତା ଅର୍ଜନ କରିବାକୁ ହୁଏ । ଅନଭିଜ୍ଞ ହୋଇ ପ୍ରବୀଣ ଲୋକର ଆସନରେ ଆସୀନ ହେଲେ ନାନାପ୍ରକାର ବିଭ୍ରାଟ ଘଟେ ।

ମାତା ଆପଣାର ଯୋଗ୍ୟ ଆସନ ପାଇ ପରିବାରମଧ୍ୟରେ ସ୍ୱାମୀ ସ୍ତ୍ରୀ, ଭାଇ ଭାଇ, ଭାଇ ଭଉଣୀ, ଯା ନଣନ୍ଦ ପ୍ରଭୃତିଙ୍କ ମଧ୍ୟରେ ଏପରି ସୁନ୍ଦର ସମ୍ବନ୍ଧ ରକ୍ଷା କରନ୍ତି ଯେ, ସେଠାରେ କୌଣସି ଅଶାନ୍ତି ଜାତ ହେବା ଦୂରେଣିକ ଥାଉ, ପ୍ରତ୍ୟେକେ ଅପରର ସୁଖସବିଧାରେ ଆପଣାକୁ ବିଶ୍ୱସନୀୟ ମନେ କରନ୍ତି । A.B Alcott କହିଅଛନ୍ତି, "Where there is a mother in the home matters speed well." ଅର୍ଥାତ୍ ଯେଉଁ ଗୃହରେ ଜନନୀ ବିଦ୍ୟମାନ ସେଠାରେ ସମସ୍ତ ବିଷୟ ସୁଚାରୁରୂପେ ସମ୍ପନ୍ନ ହୁଏ । ଏହି ତ ମାତୃଭକ୍ତିର ପୁରସ୍କାର । ଏ ପୁରସ୍କାର ପାଇଁ ଲାଳାୟିତ ହେବା ପ୍ରତ୍ୟେକ ମନୁଷ୍ୟନାମଧାରୀ ବ୍ୟକ୍ତିର କାର୍ଯ୍ୟ । ସମସ୍ତେ ନିଜ ନିଜର ପରିଚିତ ବ୍ୟକ୍ତିବର୍ଗଙ୍କଠାରୁ ଚିହ୍ନି ନେଲେ ବୁଝି ପାରିବେ ଯେ, ମାତୃଭକ୍ତିର ପୁରସ୍କାର ଓ ମାତୃ-ନିଗ୍ରହର ତିରସ୍କାର ହାତେ ହାତେ । ସୁତରାଂ ଜଗଜ୍ଜନନୀଙ୍କର ଅବତାର ଜନନୀଙ୍କପ୍ରତି ଭକ୍ତି, ପ୍ରୀତି, ସ୍ନେହ ଓ ଶ୍ରଦ୍ଧା ସମ୍ପନ୍ନ ହେବା ସମସ୍ତଙ୍କର ଅତି ଅଳଙ୍ଘନୀୟ କର୍ତ୍ତବ୍ୟ କର୍ମ ।

# ପରିଶିଷ୍ଟ

## ମାତୃସ୍ମୃତି

ମା ! ତୁ ୧୯୧୮ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରୁ ଏ ନର ସଂସାର ସହିତ ସମସ୍ତ ସମ୍ପର୍କ ତ୍ୟାଗ କରିବା ଦିନୁଁ ମାତୃଗୁଣଗାନ ଅଭିଳାଷ ମୋ ହୃଦୟରେ ବଳବାନ୍ ହୋଇଅଛି । ଜନନୀର ଋଣ ଅପରିଶୋଧ୍ୟ । ମୁଁ କେବଳ ତୋର ପବିତ୍ର ସ୍ମୃତିକୁ ପୂଜା କରିବାକୁ ଯାଇ "ଜନନୀ" ରୂପ ନୈବେଦ୍ୟର ଆୟୋଜନ କରିଅଛି । ମା ଗୋ, ଏହା ପାଠ କରି ଯଦି କୌଣସି ଅଭକ୍ତପ୍ରାଣରେ ମାତୃଭକ୍ତିର ସଞ୍ଚାର ହୁଏ, ତେବେ ସିନା ମୋର ସମସ୍ତ ପରିଶ୍ରମ ସାର୍ଥକ ହେବ ।

---

ମା ! ବାଲ୍ୟକାଳରୁ ପିତାମାତାଙ୍କୁ ହରାଇ ତୁ ଦୁଃଖିନୀ ହୋଇଥିଲୁ । ଶ୍ୱଶୁର ଗୃହକୁ ଆସି ମଧ୍ୟ ତୋର ଦୁଃଖର ସୀମା ନ ଥିଲା । ମାଗୋ ! ତୁ କ'ଣ କେବଳ ଦୁଃଖର ପସରା ମୁଣ୍ଡରେ ବୋହିବାପାଇଁ ଜନ୍ମ ହୋଇଥିଲୁ । ଆମ୍ଭର ଗ୍ରାମରେ ଯେତେ ଲୋକ ଅର୍ଥୋପାର୍ଜ୍ଜନ କରୁଥିଲେ, ତୋରସ୍ୱାମୀ ମୋର ପରମାରାଧ୍ୟ ପିତୃଦେବ – ସେମାନଙ୍କ ମଧ୍ୟରୁ ଅଗ୍ରଣୀ କହିଲେ ଚଳେ । କିନ୍ତୁ ତୋର ଦୁଃଖ ତୋର ଅମୂଲ୍ୟ ସମ୍ପଦ । ତୁ ସେ ଦୁଃଖ କାହାର ସହିତ କେବେହେଁ ବିନିମୟ କରିନାହୁଁ ।

---

ଖାଣ୍ଟି ସୁନା ଅଗ୍ନିରେ ଯେତେ ପୋଡ଼ୁଥାଏ ସେତେ ଦୀପ୍ତିମାନ୍ ହେଉଥାଏ । ମା, ତୁ ଦୁଃଖାଗ୍ନିରେ ବାରମ୍ବାର ଦଗ୍ଧ ହୋଇ କେବଳ ନିର୍ମ୍ମଳ ପବିତ୍ର ହେଲୁ ସିନା ! ତୋର ସେଥିରେ କୌଣସି ହାନି ହୋଇ ନାହିଁ । କିନ୍ତୁ ଯେଉଁମାନେ ତୋର ଦୁଃଖ ଦେଖିଅଛନ୍ତି ସେମାନେ ମର୍ମ୍ମାହତ ହୋଇ ଅଶ୍ରୁବାରି ବର୍ଷଣ କରିଅଛନ୍ତି ।

---

ମା, ତୋର ନ ଥିଲା କ'ଣ ? ନାନା ବିଷୟରେ ଅଭିଜ୍ଞା ଶାଶୁ, ବିପୁଳ ଅର୍ଥୋପାର୍ଜନକ୍ଷମ ସ୍ୱାମୀ, ସୁସ୍ଥସବଳ ତନପୁତ୍ର, ଅତ୍ୟାଧିକ ପରିମାଣରେ ଘରଦ୍ୱାର ଜମିଜମା—ସଂକ୍ଷେପତଃ ମନୁଷ୍ୟକୁ ସୁଖୀ କରିବା-ପାଇଁ ଯାହା ଯାହା ଦରକାର, ତୋର ସେ ସମସ୍ତ ଥିଲା । କିନ୍ତୁ ସେ ସମସ୍ତ ତୋତେ ସୁଖ ଦେଇ ପାରିଲେ ନାହିଁ । କିପରି ଦେବେ ମା ! ତୁ ତ କେବେହେଁ ମରଜଗତର ସୁଖଆଶା ରଖି ନ ଥିଲୁ । ତୋର ସୁଖ ଅନ୍ୟପ୍ରକାର, ଆମ୍ଭେମାନେ କ'ଣ ସେ ସୁଖର ଧାରଣା କରି ପାରିବୁ ?

---

ମା ! ଶୁଣିଛୁ, ତୁ ବାଲ୍ୟକାଳରୁ ଠାକୁରପୂଜାରେ ସତତ ବ୍ରତୀ ବୋଲି ତୋତେ ଶାଶୂ ଶ୍ୱଶୁରଙ୍କର ତିରସ୍କାର ସହ୍ୟ କରିବାକୁ ହେଉ-ଥିଲା । ମୁଁ ମଧ ସ୍ୱଚକ୍ଷୁରେ ଦେଖିଛି, ସେହି ଦେବପୂଜାରେ ତୋର ଅଧିକ ସମୟ ଯାଏ ବୋଲି ତୋର ଶାଶୁ, ସ୍ୱାମୀ ଏବଂ ପୁତ୍ରମାନେ ମଧ ଅଧୀର ହୋଇ ତୋ ଉପରେ ଗାଳି ବର୍ଷଣ କରନ୍ତି । ଦେବି ! ଏ ସ୍ୱାର୍ଥମୟ ସଂସାରକୁ କାହିଁକି ଆସିଥିଲୁ କହ ତ ? ଏଠାରେ ଯାହାର ହିଁକିଏ ସୁଖ ବା ସ୍ୱାର୍ଥରେ ବାଧା ପଡ଼ିବ, ସେ ଆଉ ଅନ୍ୟ ବିଚାର କରିବ କି ? ମା ! ଏହି ଚକ୍ଷୁରେ ଦେଖିଛି, ତୁ ଆମ୍ଭମାନଙ୍କୁ ରାନ୍ଧି ବାଢ଼ି ଖାଇବାକୁ ଦେଇ ଦିନ ୧୦।୧୧ ଟା ବେଳୁଁ ଅପରାହ୍ଣ ୩।୪ଟା ବେଳପାକେ, ପୁଣି ସନ୍ଧ୍ୟା ୭ରୁ ୮ଟା ଏବଂ ରାତ୍ରି ୧୦ଟାଠାରୁ ଗୋଟାକ ପର୍ଯ୍ୟନ୍ତ ତୁଳସୀମଣ୍ଡପରେ ବସି ଖର ବର୍ଷାକୁ ଯେପରି ଉପେକ୍ଷା କରୁଥାଉ, ତୋର, ସ୍ୱାମୀ ଶାଶୁ, ପୁତ୍ରମାନଙ୍କର ଗାଳିମନ୍ଦକୁ ମଧ୍ୟ ସେହିପରି ଅମ୍ଳାନବଦନରେ ସହ୍ୟ କରୁଥାଉ । ଏତେ ଗାଳିମନ୍ଦ ଖାଇବା ପରେ ମଧ୍ୟ ସେ ଅମ୍ଳାନମୁଖ ଯେ ଦର୍ଶନ କରିଅଛି, ସେ ମୁଗ୍ଧ ହୋଇଯାଇଛି । ପାଚକ ନ ଥିବାବେଳେ ମଧେ ମଧେ ଦୁଇଘଣ୍ଟା ଘଣ୍ଟାଏ ରନ୍ଧିବାରେ ତୋର ସମୟ ଯାଉଥିଲା !

ବନ୍ଧୁ ପାଠକ ନିଯୁକ୍ତ ହେଲେ ତୋର ପୁତ୍ରମାନେ ଆନନ୍ଦରେ ବଣ୍ଟି ଖାଇ ପାରିବେ ନାହିଁ ବୋଲି ତୁ ଯେପରି ଦୁଃଖିତ ହେଉ, ପୁଣି ତୋର ପୂଜାର ସୁବିଧା ହେବ ବୋଲି ସେହିପରି ଆନନ୍ଦିତ ହୋଇ ଅବାଧରେ ପୂଜାକାର୍ଯ୍ୟରେ ମତ୍ତ ଥାଉ ।

---

ଆମର ଗୃହନିର୍ମାଣ କାଳରେ ତୋର ଇଚ୍ଛାରେ ପକ୍କା ତୁଳସୀମଣ୍ଡପଟି ସର୍ବାଗ୍ରେ ନିର୍ମିତ ହୋଇଥିଲା । ତୁ ସେତେବେଳେ ଗୃହର ଅଗଣାରେ ପିତାଙ୍କ ରେଲଓ୍ୱେ ବଙ୍ଗଳାରୁ ତୋର ତୁଳସୀମଣ୍ଡପକୁ ଦେଖିବାକୁ ଆସି ଯେ କି ପରମାନନ୍ଦରେ ଆହ୍ଲାଦିତ ହୋଇଥିଲୁ, ସେହି ମଣ୍ଡପଟି ଆଜି ତାହାର ଏବଂ ତୋର କଠିନ ତପସ୍ୟାର ସ୍ମାରକରୂପେ ବିଦ୍ୟମାନ ରହି ଆମ୍ଭମାନଙ୍କ ମନରେ ଯୁଗପତ୍ ଭକ୍ତି ଓ ଶୋକ ସଞ୍ଚାର କରୁଅଛି ।

ମା ! ତୋର ଶାଶୁ ତୋ ଉପରେ ନିରନ୍ତର ଦେବପୂଜା ସକାଶେ ଖଡ୍ଗହସ୍ତ ଥିଲେ ମଧ୍ୟ ତୋର ଗୁଣରେ ମୁଗ୍ଧ ଥିଲେ । ଦିନେ ତୁ ଉତ୍କଟ ପୀଡ଼ାରେ ଶଯ୍ୟାଶାୟୀ । ଗମ୍ଭୀରପ୍ରକୃତି ତୋର ଶାଶୁ ନୟନରୁ ଅଶ୍ରୁ ବିନ୍ଦୁ ପକାଇ କହୁଥାନ୍ତି, "ମୋର କେତେ ଗୁଣର ବୋହୂ, ମୋତେ ଆଗରୁ ଛାଡ଼ି ପଳାଇବ କି ?" ମା ! ତୁ ସେ କାତର କ୍ରନ୍ଦନ ଥରେ ଦେଖିଥିଲେ ଆମ୍ଭେମାନେ କେତେ ଆଶ୍ୱସ୍ତ ହୋଇ ଥାନ୍ତୁ । ଯାହାହେଉ ବୃଦ୍ଧା ଶାଶୁଙ୍କୁ ପଛରେ ପକାଇ ତୁ ଆଗରୁ ଚାଲି ଯାଇନାହୁଁ । ସେ ତୋ ସମ୍ମୁଖରେ ଚାଲିଯିବା ପର୍ଯ୍ୟନ୍ତ ତୁ ଅପେକ୍ଷା କରିଥିଲୁ ।

---

ମା ! ତୋର ଗୁରୁଭକ୍ତି ପୁଣି ଏତେ ଅଟଳ । ଶାଶୁ ବା ସ୍ୱାମୀଙ୍କର ନିରନ୍ତର ଗାଳି ବର୍ଷଣ ହେଲେ ମଧ୍ୟ ସେମାନଙ୍କ ପ୍ରତି କର୍ତ୍ତବ୍ୟରେ ତୋର ଦିନେହେଲେ ତ୍ରୁଟି ଲକ୍ଷିତ ହେଲା ନାହିଁ । ତୋର ଯେପରି କର୍ତ୍ତବ୍ୟପରାୟଣତା ଏ ମର୍ତ୍ତ୍ୟରେ ଅସମ୍ଭବ ବୋଲି ଏ ମର୍ତ୍ତ୍ୟର ଲୋକେ

ତୋତେ ବୁଝିପାରୁ ନ ଥିଲେ । ପଡ଼ୋଶୀ ମାଉପେ କହନ୍ତି, "ଭଉଣୀ, ଏତେ ଗାଳି ଶୁଣିଲେ ଆମେ ତ ବୁଢ଼ାମରନ୍ତୁ ପଛକେ, ଏପରି ଘରେ ରହନ୍ତୁ ନାହିଁ, ଖୁବ୍ ସହି ରହୁଛି ଗୋ" । ପୁଣି କେହି କେହି କହନ୍ତି, "ସେ ହାଡ଼ଭଙ୍ଗୀଟା ମନରେ କିଛି ଧରି ପାରେନାହିଁ ।" ତୋର କୌଣସି ପୁତ୍ର ମଧ୍ୟ ତୋତେ ହାଡ଼ଭଙ୍ଗୀ ବା ବୋକା ବୋଲି ସ୍ଥିର କରିଥିଲେ, କାରଣ ଏତେ ଗାଳିମନ୍ଦ ଶୁଣି ସମସ୍ତ ସହ୍ୟ କରି ପଦେ ମଧ୍ୟ ଓଲଟି ନକହି ତୁ ଯେ ଚିରକାଳ ଚୁପ ହୋଇ ରହିଥାଉ, ଏହା ମର୍ତ୍ତ୍ୟ ଭୂମିରେ ହାଡ଼ଭଙ୍ଗୀର ଲକ୍ଷଣ । ତୁ ପ୍ରକୃତରେ ହାଡ଼ଭଙ୍ଗୀ କି ବୁଦ୍ଧିମତୀ ଜାଣିବାପାଇଁ ମୋ ମନରେ ଦିନେ କୌତୁହଳ ଜାତ ହେବାରୁ ତୋତେ ପଚାରିଥିଲି, "ଆଚ୍ଛା, ମା ! ତୁ ତୋର ଗୁରୁଜନଙ୍କର ଏତେ କଥା ଶୁଣି ନିଜର ନିର୍ଦ୍ଦୋଷତା ଜଣାଇ ଦେବାପାଇଁ ପଦେ ହେଲେ କଥା ନ କହୁ କାହିଁକି ? ପୁଣି ତ ପୂର୍ବ ପରି ସେମାନଙ୍କର ସେବା କରୁ ।" ତୁ ଯେଉଁ ଉତ୍ତର ଦେଇଥିଲୁ ତାହା ମରିବାଯାଏ ମନରୁ ପାସୋରିବି ନାହିଁ । ତୋର ଉତ୍ତରରେ ବୁଝିଥିଲି — ତୁ ହାଡ଼ଭଙ୍ଗୀ ନୋହୁ, ତୋତେ ଯେଉଁମାନେ ହାଡ଼ଭଙ୍ଗୀ ମନେ କରନ୍ତି ସେମାନେ ହାଡ଼ଭଙ୍ଗା ହାଡ଼ଭଙ୍ଗୀ । ମା ! ତୁ କହିଥିଲୁ "ବାବା, ତୁ ସେ ସବୁ କଥା କ'ଣ ଶୁଣିବୁ ?" ମୁଁ ଏକା ଜିଦ୍ ଧରିବାରୁ ତୁ କହିଲୁ, "ବାବାରେ, ଯେ ଯାହା କହୁ, ମୋର କର୍ତ୍ତବ୍ୟ ମୋର ଗୁରୁଜନମାନଙ୍କ ସେବା କରିବା । ସେମାନେ ମୋ ପ୍ରତି ବିରକ୍ତ ବା ଅନୁରକ୍ତ ହୁଅନ୍ତୁ, ସେଥିରେ ମୋର କିଛି ଯାଏ ଆସେ ନାହିଁ । ସେମାନେ ଯଦି କେତେବେଳେ ସେମାନଙ୍କ କର୍ତ୍ତବ୍ୟରେ ତ୍ରୁଟି କରନ୍ତି, ସେଥିପାଇଁ ମୁଁ କ'ଣ ମୋ କର୍ତ୍ତବ୍ୟରେ ତ୍ରୁଟି କରିବି ?" ଏତିକି କହି ତୁ ନୀରସ୍ତ ହୋଇ ସ୍ଥାନାନ୍ତରକୁ ଚାଲିଗଲୁ; ମୁଁ କିନ୍ତୁ ତୋର ଦେବମାନବଭାବରେ ଚମତ୍କୃତ ହୋଇ ମୋର ଅଗ୍ରଜମାନଙ୍କୁ ସେ କଥା ଜଣାଇଲି । ସେମାନେ ମୋପାଖରୁ ତୋର ଉତ୍ତର ଶୁଣି ମୁଗ୍ଧ ଓ ନୀରବ ହୋଇ ରହିଲେ ।

ମା ! ଆଜକାଲିକା ସଂସାରରେ ପୁତ୍ରକୁ ଧର୍ମପଥର ପଥିକ ଦେଖିଲେ ପିତାମାତାଙ୍କର ଅସହ୍ୟ ହୁଏ । ତୁ କିନ୍ତୁ ସେ ନିୟମରୁ ବାହାର । ଯେଉଁଦିନ ଆମ୍ଭେମାନଙ୍କର ଯତ୍ ସାମାନ୍ୟ ଧର୍ମକାର୍ଯ୍ୟରେ ତ୍ରୁଟି ଏବଂ ବିଳମ୍ବ ଘଟେ, ତୁ ପଚାରୁଥାଉ, "କିରେ ଆଜ ଉପରକୁ (କୋଠା ଉପର ଠାକୁରଘରକୁ) ଯିବୁନାହିଁ କି ?" ଆମ୍ଭେମାନଙ୍କର ପୂଜାର ଆୟୋଜନସ୍ୱରୂପ ଫୁଲ ତୋଳି ଆଣିବା, ପୂଜାସ୍ଥାନ ଧୁଆଧୋଇ କରି ପରିଷ୍କାର କରିବା ଇତ୍ୟାଦି କାର୍ଯ୍ୟ ତୁ ଯେଉଁ ଆନନ୍ଦ ସହିତ ସମାଧାନ କରୁଥିଲୁ, ତାହାର ପଟାନ୍ତର କାହିଁ ? ତୋ ଯିବାଦିନୁଁ ସେପରି ଧର୍ମକାର୍ଯ୍ୟରେ ଉତ୍ସାହ ଦେବାପାଇଁ ଆଉ ଲୋକ କାହାନ୍ତି ?

---

ମା ! ପୁତ୍ରକୁ ନିରାମିଷାଶୀ ଦେଖିଲେ ପିତା ମାତାଙ୍କର ହୃତ୍‌କମ୍ପ ହୁଏ କିନ୍ତୁ ତୋପକ୍ଷରେ ସବୁ ଓଲଟା କଥା । ଦିନେ ବୈଷ୍ଣବଧର୍ମାବଲମ୍ବୀ ମୋର ମଧ୍ୟମଭ୍ରାତା କୈଳାସଚନ୍ଦ୍ର କ୍ରମାଗତ ୬।୭ ମାସ ଜ୍ୱରବେଗରେ ଶଯ୍ୟାଶାୟୀ ହୋଇ ମାନସିକ ଦୁର୍ବଳତାହେତୁ ମତ୍ସ୍ୟଭକ୍ଷଣର ଇଚ୍ଛା ଜ୍ଞାପନ କରିବାରୁ ତୁ ଆନନ୍ଦ ପ୍ରକାଶ କରିବା ତେଣିକି ଥାଉ, ତତ୍‌କ୍ଷଣାତ୍ ଧୀର ଗମ୍ଭୀରଭାବରେ କହିଲୁ, "ବାପା, ତୁ ପରା ଆମିଷ ପରିତ୍ୟାଗ କରିଛୁ ? ପ୍ରାଣ ଗଲେ ଯିବ, ତୋତେ ଆମିଷ ଖାଇବାକୁ ଦେବି ନାହିଁ । କେତେକଷ୍ଟରେ ତୋତେ ପବିତ୍ର ରଖିଛି ।" ଭାଇ ମୋର ଏହି କଥା ଶୁଣି ଏଡ଼େ ବଡ଼ ରୋଗଶଯ୍ୟାରେ ମଧ୍ୟ ଦେବୀ-ଉପମ ମାତାଙ୍କ କଥାରେ ଆନନ୍ଦିତ ହୋଇ ସେ ଆନନ୍ଦ ଈଷତ୍ ହାସ୍ୟଦ୍ୱାରା ଜ୍ଞାପନ କରିଥିଲେ । ସବୁ କଥା ମନେ ଅଛି ।

---

ମା ! ଯେତେବେଳେ ମୋର ପ୍ରିୟତମ ମଧ୍ୟମଭ୍ରାତା କୈଳାସଚନ୍ଦ୍ର ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇ ନବାନୁରାଗରେ ପଡ଼ି ବିଦ୍ୟାଶିକ୍ଷାପ୍ରତି ଏବଂ ଶ୍ରଦ୍ଧାହୀନ, ଅନ୍ୟ କର୍ତ୍ତବ୍ୟ ପରିତ୍ୟାଗ କରି ଧର୍ମଚର୍ଚ୍ଚାରେ ରତ

ହେଲେ, ଯେତେବେଳେ ସେ ପିତାଙ୍କର ତୀବ୍ର ଭର୍ତ୍ସନା ଓ କଟୂକ୍ତି ଶ୍ରବଣ କରି ଜର୍ଜରିତ ପ୍ରାଣରେ ତୋ ପାଖକୁ ଗଲାବେଳେ ତୁ ଯେ ସ୍ନେହଚନ୍ଦନ ଲେପନ କରି ଦେଉଥିଲୁ ; ସେଥିରେ ସେ ସମସ୍ତ ଜ୍ୱାଳାରୁ ନିଷ୍କୃତି ଲାଭ କରୁଥିଲେ । ବାସ୍ତବିକ ତୋପରି ଜନନୀ ପାଇ ନ ଥିଲେ ତୋର ପୁତ୍ରମାନଙ୍କ ମନରେ ଯତ୍ କିଞ୍ଚିତ୍ ଧର୍ମଭାବ ପ୍ରବେଶ କରି ନ ଥାନ୍ତା ।

ମା, ତୋର ପୁତ୍ରବୋଲି ଆପଣାକୁ ଚିହ୍ନାଦେବାପାଇଁ ଶଙ୍କା ବୋଧ ହୁଏ । ତୁ ସାକ୍ଷାତ୍ ଦେବୀମୂର୍ତ୍ତି—ଆମ୍ଭେମାନେ ତ ତୋର ପଦରେଣୁ ଧାରଣ କରିବାର ଯୋଗ୍ୟ ହେଲୁଁ ନାହିଁ । ବାଲ୍ୟକାଳରେ ମୋର ସତ୍ୟପ୍ରତି ସାମାନ୍ୟ ନିଷ୍ଠା ଦେଖି ତୁ ଯେପରି ପ୍ରୀତ ଓ ଗର୍ବିତ ହେଉଥିଲୁ , ସେଥିରେ ମୋର ସତ୍ୟପ୍ରତି ଆଗ୍ରହ ଉତ୍ତରୋତ୍ତର ବୃଦ୍ଧି ପ୍ରାପ୍ତ ହେଉଥିଲା । ଥରେ କୌଣସି ବିଷୟରେ ମୁଁ ମିଥ୍ୟାକଥା କହୁଅଛି ବୋଲି ତୋର ସନ୍ଦେହ ହେବାରୁ ତୁ ଆରକ୍ତ ମୁଖମଣ୍ଡଳରେ ମୋତେ ପଚାରିଥିଲୁ, "ତ ରେ ମିଛ କହିଲୁ କି ?" ସେ ପ୍ରଶ୍ନର ଉତ୍ତର ଯେ ମୁଁ କିପରି ସଶଙ୍କ ଭାବରେ ଦେଇଥିଲି ତାହା ମନେ କଲେ ଆଜି ମଧ୍ୟ ରୋମାଞ୍ଚ ହୁଏ । ଯେତେବେଳେ ତୁ ବୁଝିପାରିଲୁ ଯେ ମୁଁ ମିଛ କହି ନ ଥିଲି, ସେତେବେଳେ ତୁ କହିଲୁ , "ସେଇତ କହ, ମୁଁ ମନେ କଲି ତୁ ମିଛ କହିଲୁ । ବାବା, ତୁ ସତ କହୁ, ମୋର ଏଥିରେ ଯେ କେତେ ଆନନ୍ଦ ମୁଁ କଣ କହିବି ?" ତୋର ସେ ସ୍ୱର୍ଗୀୟ କଥାଗୁଡ଼ିକ ଆଜି ମଧ୍ୟ ହୃଦୟଫଳକରେ ସ୍ପଷ୍ଟଭାବରେ ଅଙ୍କିତ ରହିଅଛି ।

---

ଥରେ କୌଣସି ବିଶେଷ କାର୍ଯ୍ୟ କରିବାପାଇଁ ମୋର ପିତୃଦେବ ମୋତେ ଆଜ୍ଞା ପ୍ରଦାନ କଲେ । ସେ କାର୍ଯ୍ୟ ଏକାବେଳକେ ଅନ୍ୟାୟ ନ ହେଉ, ସମ୍ପୂର୍ଣ୍ଣ ନ୍ୟାୟଯୁକ୍ତ ବୋଲି ମୋତେ ବୋଧ ହେଲା ନାହିଁ । ମୁଁ ତାହା କରିବି କି ନାହିଁ ସ୍ଥିର କରି ନ ପାରି ତୋର

ପରାମର୍ଶ ନେଉଥିଲି । ତୁ କହିଲୁ, "ନା ବାବା, ଅନ୍ୟାୟ ଯେତେ ସାମାନ୍ୟ ହେଲେ ମଧ୍ୟ ସେଥିରେ ଆପଦର ସମ୍ଭାବନା । ସେଥିରୁ ଦୂରରେ ରହିବୁ ତୋର ବାବା ଏହିକ୍ଷଣି ବୁଝି ନ ପାରିଲେ ମଧ୍ୟ ପରେ ବୁଝିପାରିବେ ।" ସେତେବେଳେ ଅତି ସାମାନ୍ୟ ଅନ୍ୟାୟ କର୍ମରେ ମୋତେ ବିମୁଖ ଦେଖି ପିତୃଦେବ ମୋର ସାମୟିକ ଅବାଧ୍ୟତାରେ ବିରକ୍ତ ହେଲେ ସତ୍ୟ— କିନ୍ତୁ ତତ୍ପରେ ତାହାଙ୍କର ବିରକ୍ତି ଅନୁରକ୍ତିରେ ପରିଣତ ହୋଇଥିଲା ।

---

ମା, ମୋର ଯୌବନର ପ୍ରାରମ୍ଭରେ ଦିନେ ଗୋଟିଏ ଭୃତ୍ୟ ଉପରେ ବିରକ୍ତ ହୋଇ ତାହାକୁ ଠେଲିଦେଲି । ତୁ ସେତେବେଳେ ତୁଳସୀ-ମଣ୍ଡପରୁ ମୋତେ ଏହି ଆଦେଶ କରିଥିଲୁ, "ଦେଖ, ଭବିଷ୍ୟତରେ କୌଣସି ଚାକରଦେହରେ କେବେହେଁ ହାତ ଦେବୁନାହିଁ । ବରଂ ତାହାର ଅନ୍ୟାୟ ଦେଖିଲେ ତାହାକୁ ବିଦାୟ କରି ଦେବୁ; କିନ୍ତୁ କେବେହେଁ କାହାର ଦେହରେ ହାତ ଛୁଇଁବୁ ନାହିଁ ।" ମୁଁ ବୟସ୍କ ହୋଇ ଚାକରର ଦୋଷ ତୋତେ ଭଲ କରି ବୁଝାଇଦେଲେ ମଧ୍ୟ ତୋର ସେ ଆଦେଶ ଅଟଳ ରହିଲା । ମା, ଆଶୀର୍ବାଦ କର, ଯେପରି ତୋର ସେ ଆଦେଶପାଳନରେ ମୁଁ ଯଥାସାଧ୍ୟ ସାବଧାନ ହୋଇପାରେଁ ।

ମା, ତୋର ଅମାୟିକତା ସ୍ମରଣ କରି ପ୍ରାଣ ପ୍ରଫୁଲ୍ଲ ହେଉଅଛି ।

---

କୌଣସି ପ୍ରତିବେଶୀ ସହିତ ଆମ ଘରର ମନୋମାଳିନ୍ୟ ଘଟିଲେ ପ୍ରତିବାସୀ ଘରକୁ ଆମ ଘରର କେହି ନ ଗଲେ ମଧ୍ୟ ତୁ ଥରେ ହେଲେ ସେଠାକୁ ଯାଇ ସେମାନଙ୍କର କୌଣସି ସେବା ବା ସହାୟତା କରି ଅଚରେ ସେମାନଙ୍କର ମନୋମାଳିନ୍ୟ ଦୂର କରୁଥିଲୁ । ତୋର ଏ ବ୍ୟବହାର ଦେଖି ତୋର ଗୁରୁଜନମାନେ ତୋ ଉପରେ କେତେଥର ବିରକ୍ତ ହୋଇଛନ୍ତି, କିନ୍ତୁ ସ୍ୱଭାବ କିଛି ମାନେ ନାହିଁ । ଶିଷ୍ଟସ୍ୱଭାବ ନାନା ବାଧା ପାଇଲେ ମଧ୍ୟ ସହଜରେ ବିପଥଗାମୀ ହୁଏନାହିଁ କିମ୍ବା ଦୁଷ୍ଟସ୍ୱଭାବ ନାନା ଉପଦେଶ ଲାଭ କରି ମଧ୍ୟ ସୁପଥଗାମୀ ହୁଏ ନାହିଁ ।

---

ମା, ତୋର ବିଶ୍ୱାସ ଓ ନିର୍ଭୀକତା ଆଜି ମଧ୍ୟ ସ୍ମୃତିପଥରେ ବର୍ତ୍ତମାନ । ଗ୍ରାମରେ ଯେତେବେଳେ ଭୂତର ଉତ୍ପାତରେ ସମସ୍ତଙ୍କର ଦ୍ୱାର ପଡ଼ିଯାଏ ଏବଂ ଏହି ଭୀଷଣ ନୀରବତାରେ କେହି ଗୃହର ଦ୍ୱାରଦେଶକୁ ମଧ୍ୟ ବାହାରିବାକୁ ସାହସୀ ହୁଅନ୍ତି ନାହିଁ, ତୁ ସେତେବେଳେ ଗ୍ରାମର ଇଷ୍ଟଦେବତା ବିନୋଦବିହାରୀଙ୍କୁ ଦର୍ଶନ କରିସାରି ଦୂରରୁ ଅନ୍ଧ-କାରରେ ଧୀର ନିର୍ଭୀକଚିତ୍ତରେ ଫେରୁଥାଉ । ତୋତେ ଅନେକେ ଅନେକ ପ୍ରକାରେ ମନା କଲେ ମଧ୍ୟ ତୋର ଅଟଳ ବିଶ୍ୱାସ ବଳରୁ ତୁ ସେ ବାଳକ୍ରୀଡ଼ାର ପୁତ୍ତଳରୂପେ କେବେହେଁ କାର୍ଯ୍ୟ କରି ନାହୁଁ । ଭକ୍ତ ଭଗବାନଙ୍କର ଶରଣ ଯେବେ ଭୂତପ୍ରେତଭୟର ଚିହ୍ନ ଦେଖାଇଲେ ସେ ଭକ୍ତିକୁ କପଟ ଭକ୍ତି ବୋଲାଯିବ ସିନା ? ତୋର ସେ କପଟଭକ୍ତି ନ ଥିଲା । ତୁ ଶ୍ରୀ ଶ୍ରୀ ବିନୋଦବିହାରୀଙ୍କ ଶ୍ରୀଚରଣରେ ଶରଣ ନେଇ ସର୍ବଦା ନିର୍ଭୀକଚିତ୍ତରେ ଗମନାଗମନ କରୁଥିଲୁ । ସେଥିପାଇଁ ଗ୍ରାମର ଆବାଳବୃଦ୍ଧବନିତା ତୋତେ ଭକ୍ତି ଓ ଶ୍ରଦ୍ଧାଚକ୍ଷୁରେ ଦେଖୁଥିଲେ ।

---

ରାମାୟଣ, ମହାଭାରତ ଓ ଚଣ୍ଡୀପାଠରେ ତୋର ଅଗାଧ ପ୍ରୀତି କିଏ ଭୁଲିବ ? ତୁ କି ଗ୍ରାମରେ, କି ସହରରେ, ରନ୍ଧାବଢ଼ା ସାରି ଆମମାନଙ୍କୁ ଖାଇବାକୁ ପିଇବାକୁ ଦେଇ ଯେତେବେଳେ କୌଣସି ଗ୍ରନ୍ଥ ଯେବେ ତନ୍ମୟଚିତ୍ତରେ ସମାଗତା ପ୍ରତିବେଶିନୀମାନଙ୍କ ସମ୍ମୁଖରେ ପାଠ କରୁଥାଉ, ତାହା ଏପରି ମନୋହର ହେଉଥାଏ ଯେ ଆଜି ମଧ୍ୟ ସେମାନେ ତୋର ଗୁଣଗାନ କରି ଅଶ୍ରୁବର୍ଷଣ କରୁଅଛନ୍ତି । କବି କହିଅଛନ୍ତି, "ସର୍ବେ ଚଳିବେ କାଳବଳେ, ଯଶଃ ରହିବ ମହୀତଳେ ।" ମା, ତୁ ଚାଲିଗଲୁଣି କିନ୍ତୁ ତୋର ଯଶୋଗାନ କେତେ ହୃଦୟରୁ ଉତ୍ଥିତ ହେଉଅଛି ।

ସ୍ୱର୍ଗୀୟ ପ୍ୟାରିମୋହନ ସେନଗୁପ୍ତ ତୋର ମଉଳାଶୁର । ସେ ଅତି ଗୁଣୀ ବ୍ୟକ୍ତି । ତୋର ଗୁଣଗ୍ରାମ ସେ ବେଶ୍ ବୁଝିପାରୁଥିଲେ ଏବଂ

ତୋତେ ଆପଣାର କନ୍ୟା ପରି ସ୍ନେହ କରୁଥିଲେ । ଯେତେବେଳେ ତୋର କୌଣସି ଅସୁବିଧାର ସମ୍ବାଦ ପାଉଥିଲେ, ଅଜା ସେହିକ୍ଷଣି ଦଉଡ଼ି ଆସି ତୋର ସମସ୍ତ ଅସୁବିଧା ଦୂର କରୁଥିଲେ ।

---

କେତେଥର ସ୍ୱାମୀ ବା ଶାଶୁଙ୍କଠାରୁ ଭର୍ତ୍ସନା ସହ୍ୟ କରି ମଧ୍ୟ ତୁ ସେ ସମସ୍ତ ଲୁଚାଇ ରଖୁ, କାହାରିକି ଜଣାଇଦେଉ ନାହିଁ । କାରଣ ଆମ୍ଭେମାନେ ଶୁଣିଲେ ବାଳେ ତୋର ଗୁରୁଜନମାନଙ୍କ ପ୍ରତି ବିରକ୍ତ ହେବୁଁ, ଏହିପରି ତୋର ଆଶଙ୍କା । ପିତା କିମ୍ବା ଅଗ୍ରଜ ଆମ୍ଭମାନଙ୍କୁ ଅନ୍ୟାୟରେ ଗାଳି ବର୍ଷଣ କଲେ ମଧ୍ୟ, ତୁ ବାରମ୍ବାର କହୁଥାଉ, "ଭୁଲି ପଡ଼ି ଯା, ସେମାନେ ଗୁରୁଜନ । ଓଲଟି ସେମାନଙ୍କୁ ଜବାବ ଦେବା ବଡ଼ ଦୋଷର କଥା ।" ତୋର ଏପରି ସ୍ନେହମୟ ଶାସନରେ ଯେ କି ପରିମାଣରେ ଶିକ୍ଷା ଲାଭ ହୋଇଅଛି, ତାହା ଆମ୍ଭେମାନେ ପ୍ରାଣେ ପ୍ରାଣେ ଅନୁଭବ କରିଅଛୁଁ ।

---

ରାମକୃଷ୍ଣ ଓ ପାଠୀପ୍ରସନ୍ନ ମୋର ସଙ୍ଗୀ ଏବଂ କଲିଜିଏଟ୍ ସ୍କୁଲର ମୋର ଅନୁଗତ ଛାତ୍ରମାନଙ୍କୁ ଜାତିବର୍ଣ୍ଣନିର୍ବିଶେଷରେ ତୁ ଯେ କି ପରିମାଣରେ ସ୍ନେହ କରୁଥିଲୁ ତାହା ଭାବିଲେ ମୋ ମନରେ ବଡ଼ ଆନନ୍ଦ ଜାତ ହୁଏ । "ତୋର ସଙ୍ଗୀମାନଙ୍କୁ ମୁଁ ତୋପରି ମନେ କରେଁ"—ଏହି କଥା ଶୁଣି ମୋର ଆନନ୍ଦର ଆଉ ସୀମା ରହେ ନାହିଁ । ସଙ୍ଗୀ ବା ଛାତ୍ରମାନଙ୍କ ମଧ୍ୟରୁ କାହାର କୌଣସି ଖାଦ୍ୟପ୍ରତି ଅଭିରୁଚି ଜାଣିଲେ ଘରେ ସେ ଖାଦ୍ୟ ପ୍ରସ୍ତୁତ ହେଲେ, ତୁ କହୁଥିଲୁ; "ଆଜି ଅମୁକ ଜିନିଷ ଆମ୍ଭଘରେ ପ୍ରସ୍ତୁତ ହୋଇଅଛି, ତୋର ଅମୁକ ସାଙ୍ଗ ବା ଛାତ୍ରଟିକୁ ଡାକିଆଣ ।" ସେମାନେ ମଧ୍ୟ ତୋତେ ଭକ୍ତି କରୁଥିଲେ ଏବଂ ତୋର ଶେଷ ଶଯ୍ୟାପାର୍ଶ୍ୱରେ ବସି ଅଶ୍ରୁ ମୋଚନ କରି ତୋତେ ସ୍ନେହୋପହାର ଦେଇଥିଲେ ।

---

ମା, ମୁଁ ଜାଣିଅଛି ଯେ, ଦୁଃଖକୁ ତୁ ପରମ ସମ୍ପଦ ବୋଲି ମନେ କରୁଥିଲୁ । ସ୍ୱର୍ଣ୍ଣାଳଙ୍କାରରେ ତୋର ଅଙ୍ଗ ଭୂଷିତ ନ ଥିଲା ବୋଲି ତୋର ମଧ୍ୟମ ପୁତ୍ର କୈଳାସଚନ୍ଦ୍ର କଲିକତାରେ ଓକାଲତି ପଢ଼ିବାବେଳେ ତୋପାଇଁ ଅତି ସୁନ୍ଦର ସୁନାର ବାଲା ଓ ଅନନ୍ତ ତିଆରି କରାଇ କଟକ ନେଇ ଆସିଲେ । କିନ୍ତୁ ତୁ ସେତେବେଳେ ଅନ୍ତିମ ଶଯ୍ୟାରେ ଥିବାରୁ ତୋତେ ସେ ସବୁ ଦେଖାଇଲେ ନାହିଁ । ଜୀବନଯାକ ସତୀତ୍ୱ ଓ ଦାରିଦ୍ର୍ୟକୁ ସମ୍ପଦ ବୋଲି ଜ୍ଞାନ କରି ଅନ୍ତେ ସୁବର୍ଣ୍ଣାଳଙ୍କାରର ଲୋଭକୁ ତୁଚ୍ଛ କରିଦେଲୁ ପରା ?

ମା ମୋର ବଡ଼ ଇଚ୍ଛା ଥିଲା ଯେ, ଯେଉଁମାନେ ତୋର ଦେବକାର୍ଯ୍ୟ-କଳାପ ବୁଝି ନ ପାରି ତୋ ଉପରେ ଗାଳି ବର୍ଷଣ କରୁଛନ୍ତି, ତୁ ସେହିମାନଙ୍କ ସମ୍ମୁଖରେ ଧର୍ମର ଧ୍ୱଜା ଉଡ଼ାଇ ଚାଲିଯିବୁ ଏବଂ ତୋର ଯିବାର ସ୍ୱଳ୍ପ କାଳମଧ୍ୟରେ ମୋତେ ପାଖକୁ ନେଇଯିବୁ । ମୋର ଏ ଦୁଇ ବାସନାମଧ୍ୟରୁ ଗୋଟିଏ ବାସନା ପୂର୍ଣ୍ଣ ହୋଇଅଛି । ଦିନେ ତୋର ଶାଶୁ ତୋର ଉତ୍କଟ ବ୍ୟାଧିରେ ଅସ୍ଥିର ହୋଇ କ୍ରନ୍ଦନ କରୁଥିଲେ ବୋଲି ତାଙ୍କୁ ଦୁଃଖ ନ ଦେଇ ସେ ତୋର ସମ୍ମୁଖରେ ଚାଲିଯିବାଯାଏ ଅପେକ୍ଷା କରି ରହିଲୁ ସତ୍ୟ, କିନ୍ତୁ ତୋର ପରମାରାଧ୍ୟ ସ୍ୱାମୀଙ୍କୁ ସମ୍ମୁଖରେ ବସାଇ ସତୀସାଧ୍ୱୀ-ସାଧନାର ଧ୍ୱଜା ଉଡ଼ାଇ ହସି ହସି କନାଇ କନାଇ ସ୍ୱର୍ଗୋନ୍ମୁଖେ ଚାଲିଗଲୁ !